## ପ୍ରକାଶିତ ପୁସ୍ତକାବଳୀ :

- **ଜୀବନର ଜୀବନୀ :**
  ଯେଉଁ ବିଶିଷ୍ଟ ବୈଜ୍ଞାନିକମାନେ ଚିକିତ୍ସା ବିଜ୍ଞାନର ଆରମ୍ଭରୁ ଆଜିଯାଏଁ ଯୁଗାନ୍ତକାରୀ ଉଦ୍ଭାବନ ଦ୍ୱାରା ମଣିଷ ଜୀବନର ଗତି ଓ ପ୍ରକୃତିରେ ପ୍ରଭାବଶାଳୀ ପରିବର୍ତ୍ତନ ଆଣିପାରିଛନ୍ତି— ସେମାନଙ୍କ ସଂକ୍ଷିପ୍ତ ଜୀବନୀ । ଓଡ଼ିଆ ଭାଷାରେ ଏଇ ମହାମାନବମାନଙ୍କ ଜୀବନ-ଆଲୋଚନା-ଏକ ଅନନ୍ୟ ପ୍ରୟାସ ।
- **ଦୁଇ ଦୁଗୁଣେ ଚାରି :**
  ଚାରୋଟି ନାଟକର ସମାହାର । ପ୍ରତ୍ୟେକ ନାଟକ ଆକାଶବାଣୀ କଟକ ଦ୍ୱାରା ବହୁବାର ପ୍ରଚାରିତ । ନୂତନ ଶୈଳୀ, ନୂତନ ସ୍ୱାଦ ।
- **First aid for One and All :**
  Profusely illustrated. Written in simple English. A complete know how on first aid.
- **ସମସ୍ତଙ୍କ ପାଇଁ ପ୍ରାଥମିକ ଚିକିତ୍ସା :**
  ସଚିତ୍ର । ସରଳଭାଷାରେ ଲିଖିତ । ପ୍ରତ୍ୟେକ ବର୍ଗର ନାଗରିକଙ୍କ ପାଇଁ ସୁଖ ପାଠ୍ୟ । ଦରକାରୀ ।
- **ପିଲାଙ୍କ ପ୍ରାଥମିକ ଚିକିତ୍ସା :**
  ଶିଶୁ ସାହିତ୍ୟ । ଶିଶୁମାନଙ୍କୁ ପ୍ରାଥମିକ ଚିକିତ୍ସା ସଚେତନ କରାଇବା ପାଇଁ ଉଦ୍ଦିଷ୍ଟ ।
- **ଶରୀର ରାଜ୍ୟର ପଞ୍ଚୁପାଣ୍ଡବ :**
  ଶିଶୁ ସାହିତ୍ୟ । ଗଳ୍ପ ଓ ଚିତ୍ର ମାଧ୍ୟମରେ ପଞ୍ଚେନ୍ଦ୍ରିୟଙ୍କ ବିଷୟରେ ତଥ୍ୟ ।
- **ପଢ଼ିଲେ ଜାଣିବ ଜାଣିଲେ ଜିତିବ :**
  ଶିଶୁ ସାହିତ୍ୟ, ଗଳ୍ପ ଓ ଚିତ୍ର ମାଧ୍ୟମରେ ଗଣିତ, ବିଜ୍ଞାନ, ଇତିହାସ ଆଦି ଶିକ୍ଷା । ଶିଶୁର ପଠନ ପ୍ରତି ଆଗ୍ରହ ସୃଷ୍ଟିକରିବା ପାଇଁ ଏକ ଅଭିନବ ମାଧ୍ୟମ ।
- **ଦରିଆର ଗୁହାରି :**
  ନବସାକ୍ଷର ମାଳା-ନାସନାଲ ବୁକ୍ ଟ୍ରଷ୍ଟ ଜଳସଂପଦ ପ୍ରଦୂଷଣ ପ୍ରତିରୋଧ ପାଇଁ ସଚେତନତା ସୃଷ୍ଟି : ଗଳ୍ପ ମାଧ୍ୟମ ।
- **ଧନ୍ଦୁ ଓ ଫୁଲକାନୀ :**
  ନବ ସାକ୍ଷର ମାଳା - ନାସ୍‌ନାଲ ବୁକ୍ ଟ୍ରଷ୍ଟ । କୁହାପଥର ଓ ପ୍ରଦୂଷଣ ବିଷୟରେ ସଚେତନତା— ଗଳ୍ପ ମାଧ୍ୟମ ।
- **ଜୀବନ ଧନ :**
  ନବ ସାକ୍ଷର ମାଳା - ରାଜ୍ୟ ସାଧନ କେନ୍ଦ୍ର । ଗଳ୍ପ ମାଧ୍ୟମରେ ସ୍ୱାସ୍ଥ୍ୟ ରକ୍ଷାର ବିଭିନ୍ନ ଦିଗ ଉପରେ ଆଲୋକପାତ ।
- **ରୋଗବାହକମାନେ :**
  ନବସାକ୍ଷର ମାଳା - ରାଜ୍ୟ ସାଧନ କେନ୍ଦ୍ର । ବିଭିନ୍ନ ସଂକ୍ରାମକ ରୋଗର ବାହକମାନଙ୍କ ବିଷୟରେ, ଗଳ୍ପ ମାଧ୍ୟମରେ ଶିକ୍ଷା ।
- **ଏତଦ୍ ଭିନ୍ନ ...**
  ଅନେକ ଅନୁବାଦ ସାହିତ୍ୟ ପୂର୍ବରୁ ପ୍ରକାଶିତ ତଥା ଯନ୍ତ୍ରସ୍ଥ । ଏକାଧିକ ଜନସ୍ୱାସ୍ଥ୍ୟ ଆଧାରିତ ମୌଳିକ ପୁସ୍ତକ ଅଧୁନା ଯନ୍ତ୍ରସ୍ଥ ।

# ଡାକ୍ତର ରବିନାରାୟଣ ରଥ

# ଜୀବନର ଜୀବନୀ


ପ୍ରକାଶିକା : © ଝରଣା ରଥ, ୪୦୯, ବନ୍ଦନା ଆପାର୍ଟମେଣ୍ଟ, ବିବେକାନନ୍ଦ ମାର୍ଗ, ଭୁବନେଶ୍ୱର - ୭୫୧୦୦୨

ମୁଦ୍ରଣ : ୟୁନାଇଟେଡ୍ ସିଷ୍ଟମସ୍, ୭୬୫, ଶହୀଦ୍ ନଗର, ଭୁବନେଶ୍ୱର - ୭୫୧ ୦୦୭

ପ୍ରଚ୍ଛଦ : ଜୟନ୍ତୀ ରଥ ଓ ଯୁଗଳ ଦେବତା

ମୂଲ୍ୟ : ସତୁରୀ ଟଙ୍କା (ବୋର୍ଡ ବନ୍ଧେଇ) ଷାଠିଏ ଟଙ୍କା (ସାଦା ବନ୍ଧେଇ)

ସଂସ୍କରଣ : ପ୍ରଥମ ସଂସ୍କରଣ ୧୯୯୯
ଦ୍ୱିତୀୟ ସଂସ୍କରଣ ୨୦୦୨


## Dr. Rabinarayan Roth

## JIBANARA JIBANI


Publisher : © Jharana Roth, 409, Vandana Apartment, Vibekananda Marg, Bhubaneswar - 751 002

Printer : United Systems, 765, Saheed Nagar, Bhubaneswar - 751 007

Cover : Jayanti Roth & Jugal Devata

Price : Rupees Seventy Only (Bound), Rupees Sixty (Paper Back)

Edition : 1st Edition 1999
: 2nd Edition 2002

# ଉତ୍ସର୍ଗ



ପୂଜ୍ୟ ନନା,

ଜୀବନରେ ନିଜପାଇଁ ଆପଣ କିଛି ବି

ଘୁହିଁ ନଥିଲେ ।

'ଓଁ ନମଃ ଶିବାୟ' ଉଚ୍ଚାରଣ ମଧ୍ୟରେ କେବଳ ଗ୍ରାମ୍ୟ

-ଜୀବନର

ବିକାଶ ଚିନ୍ତାରେ

ବୁଡ଼ି ରହିଥିଲେ ଆପଣ ।

ମାନବ - ଜୀବନର

ବିକାଶ ଧାରାରେ

ଯେଉଁ କେତେକ ମହା ମନିଷୀଙ୍କ

ଯୁଗାନ୍ତକାରୀ ଚିନ୍ତନ

ପ୍ରଣିଧାନ ଯୋଗ୍ୟ,

ତା'ର ସଂକ୍ଷିପ୍ତ ହିସାବ - ଫର୍ଦ୍ଦ

"ଜୀବନର ଜୀବନୀ" ।

ବିନମ୍ରତା ସହ

ଆପଣଙ୍କ ଚରଣକମଳରେ

ସମର୍ପଣ କରୁଛି ।

। ଇତି ।

ଆପଣଙ୍କର ଆଶୀର୍ବାଦ ଭିକ୍ଷୁ

ରବି

# ସୂଚନା

ପ୍ରାଣବନ୍ଧୁ କର

ପ୍ରାଚୀନ କାଳରୁ ଆଜିଯାଏଁ ସାରା ପୃଥିବୀର ଇତିହାସ ଅନୁଧ୍ୟାନ କଲେ ଜଣାଯିବ ଯେ କୌଣସି ଦେଶ ବା ଜାତିର ସଭ୍ୟତା ଓ ସଂସ୍କୃତିର ବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାକୁ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର ଅବଦାନ ପ୍ରଭୂତ ସାହାଯ୍ୟ କରେ । ଗୋଟିଏ ଜାତିର ଉନ୍ନତିର ମାପ କାଠି ହେଲା ସେ ଜାତିର ସଭ୍ୟତା ଓ ସଂସ୍କୃତି । ଧର୍ମ ଓ ଜୀବନ ଦର୍ଶନ କଳା, ସାହିତ୍ୟ, ବିଜ୍ଞାନ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଅର୍ଥନୈତିକ ମାନ ଦୃଷ୍ଟିରୁ ସେହି ଜାତିର ସଭ୍ୟତା ଓ ସଂସ୍କୃତିର ବିଚାର କରାଯାଏ । ଯୁଗ ଯୁଗ ଧରି ପ୍ରତିଭାଶାଳୀ ବ୍ୟକ୍ତିମାନେ ସେମାନଙ୍କର ଗଭୀର ଚିନ୍ତା, ବୁଦ୍ଧି ଓ କଳ୍ପନାପ୍ରସୂତ ଉଦ୍ଭାବନ ବା ଆବିଷ୍କାରକୁ ଜନ କଲ୍ୟାଣରେ ବିନିଯୋଗ କରିବାକୁ ପ୍ରୟାସ କରନ୍ତି । କିନ୍ତୁ ଏହି ପ୍ରତିଭାବାନ୍ ବ୍ୟକ୍ତିମାନଙ୍କର ବୁଦ୍ଧି, ଓ ମାନସିକତାର ବିକାଶ ଓ ପରିସ୍ଫୁରଣ ସେମାନଙ୍କର ସ୍ୱାସ୍ଥ୍ୟ ଶିକ୍ଷା ଓ ଆର୍ଥିକ ସ୍ୱଚ୍ଛଳତା ଉପରେ ଏକାନ୍ତ ଭାବରେ ନିର୍ଭର କରେ । ଯେଉଁ ଜାତିର ଜୀବନ ନିର୍ବାହର ମାନ ଯେତେ ଉଚ୍ଚ ସେ ଜାତିର ଶାରୀରିକ ଓ ମାନସିକ ବିକାଶ ସେତିକି ଗଭୀର । ଶରୀର ସହିତ ମନର ଘନିଷ୍ଠ ସମ୍ବନ୍ଧ । ଶରୀର ସୁସ୍ଥ ସବଳ ଓ ନିରାମୟ ଥିଲେ ମନ ସୁସ୍ଥ ରହେ ଏବଂ ମନ ସୁସ୍ଥ ଥିଲେ ଶରୀର ସୁସ୍ଥ ରହେ । ଉଭୟେ ଉଭୟର ପରିପୂରକ ।

ତେଣୁ ଶରୀରକୁ ସୁସ୍ଥସବଳ ଓ ରୋଗମୁକ୍ତ ରଖିବାକୁ ବହୁ ପ୍ରାଚୀନ କାଳରୁ ମନୁଷ୍ୟ ପ୍ରଚେଷ୍ଟା କରି ଚାଲିଛି । ଏବେ ମଧ୍ୟ ସେ ପ୍ରଚେଷ୍ଟାର ଅବ୍ୟାହତି ନାହିଁ । ସଭ୍ୟତାର ଉନ୍ମେଷ ଓ ବିକାଶ ସଙ୍ଗେ ସଙ୍ଗେ ମନୁଷ୍ୟ ଉଦ୍ଭିଦ ଓ ପ୍ରାଣୀ ପ୍ରକୃତିରୁ ନାନା ରୋଗର ପ୍ରତିଷେଧକ ଓ ନିଦାନ ପାଇଁ ଉପାଦାନ ସଂଗ୍ରହ କରି ବିଭିନ୍ନ ପ୍ରକାରର ଔଷଧ ଆବିଷ୍କାର କରିଛି ।

ଭାରତରେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ଠାରୁ ଆୟୁର୍ବେଦ ଚିକିତ୍ସା ଫଳପ୍ରଦଭାବେ ପ୍ରଚଳିତ ହେଉଥିଲେ ମଧ୍ୟ ତାର କୌଣସି ଲିଖିତ ଶାସ୍ତ୍ର ନଥିଲା— ଚରକହିଁ ସେହି ବିଧିବଦ୍ଧ ଚିକିତ୍ସା ଶାସ୍ତ୍ରର ଜନ୍ମଦାତା ।

ସେହି ଶତାବ୍ଦୀ ପରଠାରୁ ଅଦ୍ୟାବଧି ସାରା ବିଶ୍ୱରେ ଚିକିତ୍ସା କ୍ଷେତ୍ରରେ ଯେତେ ଗୁଡ଼ିଏ ଉଦ୍ଭାବନ ଓ ଆବିଷ୍କାର ହୋଇଛି ତହିଁ ମଧ୍ୟରୁ କେତେଗୋଟି ଅତି ଉଲ୍ଲେଖନୀୟ ଚିକିତ୍ସା ବିଜ୍ଞାନ ଉପରେ ଡକ୍ଟର ରବିନାରାୟଣ ରଥ ଆଲୋକପାତ କରିଛନ୍ତି ।

'ଚରକଙ୍କ ଭାରତୀୟ ଆୟୁର୍ବେଦ ବିଜ୍ଞାନ'ଠାରୁ ଆରମ୍ଭ କରି ଡାଃ କ୍ରିଷ୍ଟିୟାନ୍ ବେର୍ନାର୍ଡଙ୍କର 'ହୃଦଯନ୍ତ୍ର ପ୍ରତିରୋପଣ' ପର୍ଯ୍ୟନ୍ତ ଚିକିତ୍ସା ଜଗତକୁ ଅତି ମୂଲ୍ୟବାନ୍ ଅଠରଟି ଅବଦାନ ଉପରେ ଡାଃ ରଥ ଏକ ସ୍ପଷ୍ଟ ଓ ପ୍ରାଞ୍ଜଳ ଆଲୋଚନା କରିଛନ୍ତି । ଚିକିତ୍ସା ବିଜ୍ଞାନ ଉପରେ ସଂପୂର୍ଣ୍ଣ ଅଜ୍ଞ ଜନସାଧାରଣ ଏହି ପ୍ରବନ୍ଧଗୁଡ଼ିକ ପାଠକଲେ ନିଶ୍ଚିତ ଭାବରେ ଜାଣିପାରିବେ ଯେ ଅତିମାରାତ୍ମକ ରୋଗ ଗୁଡ଼ିକର ନିରାକରଣ ଓ ନିଦାନ ପାଇଁ ପ୍ରସ୍ତୁତ ନୀତି ନିୟମ ଓ ବ୍ୟବସ୍ଥା ଶଂସିତ ପ୍ରବନ୍ଧ ଗୁଡ଼ିକରେ ବର୍ଣ୍ଣିତ ଆବିଷ୍କାର ଓ ଉଦ୍ଭାବନ ଉପରେ ନିର୍ଭର କରେ ।

ଆଣ୍ଡ୍ରିୟାସ ଭେସାଲିଅସଙ୍କ ଶରୀର ଗଠନ ତତ୍ତ୍ୱ ଆବିଷ୍କୃତ ନହୋଇଥିଲେ ଶରୀରର କେଉଁ ଅଙ୍ଗଟି କି କାର୍ଯ୍ୟ ସମ୍ପାଦନ କରୁଛି ତାହାର ସ୍ପଷ୍ଟ ଧାରଣା ଆମର ହୋଇପାରିନଥାନ୍ତା ଏବଂ ସେ ଅଙ୍ଗଟି ରୋଗାକ୍ରାନ୍ତ ହେଲେ ଆମେ ସେ ରୋଗର ଉପଶମ ପାଇଁ ନିର୍ଦ୍ଦିଷ୍ଟ କୌଣସି ଔଷଧ ଆବିଷ୍କାର କରିପାରି ନଥାନ୍ତୁ । ଉଇଲିୟମ ହାର୍ଭେଙ୍କ ଆବିଷ୍କାର ଶରୀରରେ ଅଶୁଦ୍ଧ ଓ ଶୁଦ୍ଧ ରକ୍ତର ସଂଚାଳନ ପ୍ରକ୍ରିୟା ଉପରେ ଆମର ନିର୍ଭୁଲ ଧାରଣା ସୃଷ୍ଟିକରିବାରେ ସାହାଯ୍ୟ କଲା, ଜେନର୍‌ଙ୍କର ଗୋବୀଜ ଟୀକା ଆବିଷ୍କୃତ ହୋଇନଥିଲେ ପୃଥିବୀର ମାରାତ୍ମକ ବସନ୍ତ ରୋଗର ମୂଳୋତ୍ପାଟନ ସମ୍ଭବ ହୋଇ ପାରିନଥାନ୍ତା । ସେହିପରି ଏହି ପୁସ୍ତକଟିରେ ବର୍ଣ୍ଣିତ ଅହୁରି କେତେକ ଧୀ ଓ ପ୍ରତିଭାଶାଳୀ ବ୍ୟକ୍ତିଙ୍କର ଅପୂର୍ବ ଅବଦାନ ଦ୍ୱାରା ବହୁ ସଂକ୍ରାମକ ଓ ଏକଦା ଦୁରାରୋଗ୍ୟ ବ୍ୟାଧି ଯଥା — ମାଲେରିଆ, ଫାଇଲେରିଆ, କୁଷ୍ଠ, ଯକ୍ଷ୍ମା, ପୋଲିଓ ପ୍ରଭୃତି ସଂପୂର୍ଣ୍ଣ ଭାବେ ଆୟତ୍ତ କରାଯାଇପାରିଛି । ଏବେ ଦୁଇଟି ଅତି ମାରାତ୍ମକ ବ୍ୟାଧି କର୍କଟ ରୋଗ (Cancer) ଓ ଏଡ୍‌ସରୁ ମଣିଷ ସମାଜକୁ ସଂପୂର୍ଣ୍ଣ ମୁକ୍ତ କରିବାକୁ ବୈଜ୍ଞାନିକ ଓ ଚିକିତ୍ସକ ମାନେ ପୃଥିବୀର ସବୁ ପ୍ରାନ୍ତରେ ପ୍ରଚେଷ୍ଟା ଚଳାଇଛନ୍ତି ଏବଂ ଆଶା ନିକଟ ଭବିଷ୍ୟତରେ ସେମାନଙ୍କର ପ୍ରଚେଷ୍ଟା ସାଫଲ୍ୟ ମଣ୍ଡିତ ହେବ ।

ଡାଃ ରବିନାରାୟଣ ରଥ ମଣିଷ ଜାତିର ସୁସ୍ଥତା ପାଇଁ ଉଦ୍ଭାବିତ ଅଠରଟି ଅତି ମୂଲ୍ୟବାନ୍ ଅବଦାନ ଉପରେ ବେଶ ସହଜ ଓ ସାବଲୀଳ ଭାଷାରେ ଯେଉଁ ଆଲୋଚନା କରିଛନ୍ତି ତାହା ସ୍ୱାସ୍ଥ୍ୟ ସଂପର୍କୀୟ ଜ୍ଞାନ ବୃଦ୍ଧି ଦିଗରେ ସର୍ବସାଧାରଣ ପାଠକମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିବ ଏଥିରେ ସନ୍ଦେହ ନାହିଁ । ବହୁ କାଳରୁ ସ୍ୱାସ୍ଥ୍ୟ ପରିଚର୍ଯ୍ୟା ବିଷୟରେ ଯେଉଁସବୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ଏବେ ବି ଚଳି ଆସିଛି - ବିଶେଷ କରି ଆମ ଦେଶରେ - ଉପରୋକ୍ତ ପ୍ରବନ୍ଧ ପାଠରେ ସେସବୁ ଦୂରୀଭୂତ ହେବ ବୋଲି ମୋର ଦୃଢ଼ ଆଶା । ବିଷାକ୍ତ ସାପ କାମୁଡ଼ାରେ ଆଉ ଆମକୁ ଶିବମନ୍ଦିର ବେଢ଼ାରେ ଧିଆ ଦେବାକୁ ପଡୁନି, ଚାଡ଼ି ବା ବସନ୍ତ ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିବାକୁ ଗାଁ ଦାଣ୍ଡରେ ମାଟି ମନ୍ଦାର ଫୁଲ ଓ ପଣା ଦବାକୁ ପଡୁନି । ମଣିଷକୁ ସୁସ୍ଥସବଳ ଭାବେ

ଦୀର୍ଘଦିନ ବଂଚି ରହିବା ପାଇଁ ଯେଉଁ ସବୁ ବୈଜ୍ଞାନିକ ଉଦ୍ଭାବନ ବା ଆବିଷ୍କାର ଉପରେ ଶଂସିତ ପୁସ୍ତକରେ ଆଲୋଚିତ ହୋଇଛି ତାହା ଅତ୍ୟନ୍ତ ଉପାଦେୟ। ଶିକ୍ଷିତ ହେଲେ ବି ଆଧୁନିକ ଚିକିତ୍ସା ବିଜ୍ଞାନ ଉପରେ ମୋର ଅସଂପୂର୍ଣ୍ଣ ଜ୍ଞାନକୁ ଦୂର କରିବା ଦିଗରେ ଏହି ପ୍ରବନ୍ଧଗୁଡ଼ିକ ଯଥେଷ୍ଟ ସାହାଯ୍ୟ କରିଛି।

ଡାଃ ରଥ ଜଣେ ବିଶିଷ୍ଟ ଡାକ୍ତର ନୁହନ୍ତି, ସେ ଜଣେ ବିଶିଷ୍ଟ ନାଟ୍ୟକାର ମଧ୍ୟ। ଡାକ୍ତରୀ ବିଭାଗର ବହୁ ଘଟଣା ଓ କଥାବସ୍ତୁକୁ ନାଟକୀୟ ରୀତିରେ ଓ ସଂଗୀତ ସଂଯୋଜନା ମାଧ୍ୟମରେ ଚିତ୍ତାକର୍ଷକ କରି ଦର୍ଶକମାନଙ୍କ ପାଖରେ ପହଞ୍ଚାଇ ଦେବାରେ ସମର୍ଥ ହୋଇଛନ୍ତି। ତାଙ୍କ ରଚିତ କେତେଗୋଟି ଏକାଂକିକା ବେତାର ମାଧ୍ୟମରେ ପ୍ରସାରିତ ଓ ପ୍ରଶଂସିତ ହୋଇଛି।

ମଣିଷ ଜୀବନର ରକ୍ଷା ଓ ସୁସ୍ଥତା ଦିଗରେ ଯେଉଁ ଉଦ୍ଭାବନ ଓ ଆବିଷ୍କାରଗୁଡ଼ିକର ଅବଦାନ ଆଜିର ପୃଥିବୀ ପାଇଁ ଏକାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଛି। ସେହି ଗୁଡ଼ିକର ଜୀବନ ଇତିହାସ ଏହି ପୁସ୍ତକଟିରେ ପରିସ୍ଫୁଟିତ ହୋଇଛି· ତେଣୁ ପୁସ୍ତକର ନାମକରଣଟି ଜୀବନର ଜୀବନୀ ବେଶ୍ ତାତ୍ପର୍ଯ୍ୟ ପୂର୍ଣ୍ଣ ଓ କାବ୍ୟିକ ବୋଲି ମୋର ମନେହୁଏ।

ଓଡ଼ିଆ ଭାଷାରେ ପୃଥିବୀ ତଥା ଭାରତର ବିଭିନ୍ନ ବିଭାଗରେ ବହୁ ପ୍ରତିଭାଙ୍କ ଜୀବନୀ ଲିଖିତ ହୋଇଛି - କିନ୍ତୁ ଚିକିତ୍ସା କ୍ଷେତ୍ରକୁ ଯେଉଁ ମହା ମନୀଷୀ ମାନେ ଆଦିଯୁଗରୁ ଆଜିଯାଏ ସେମାନଙ୍କର ଅବଦାନ ଦ୍ୱାରା ପରିପୁଷ୍ଟ ଓ ଋଦ୍ଧିମନ୍ତ କରିଛନ୍ତି ସେମାନଙ୍କୁ ପାଠକ ସମକ୍ଷରେ ଉପସ୍ଥାପିତ କରିବାରେ ଏହି ବୋଧହୁଏ ପ୍ରଥମ ପୁସ୍ତକ। ମୋର ଦୃଢ଼ ବିଶ୍ୱାସ ଏହି ପୁସ୍ତକଟି ପାଠକମାନଙ୍କ ଦ୍ୱାରା ନିଶ୍ଚିତ ଭାବେ ଆଦୃତ ହେବ।

ଅବସର ପ୍ରାପ୍ତ ପ୍ରଶିକ୍ଷଣ ଅଧ୍ୟାପକ ଓ
ପୂର୍ବତନ ସଭାପତି
ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ
୩୯୬ ଶହୀଦ ନଗର, ଭୁବନେଶ୍ୱର - ୭

# ସୂଚୀପତ୍ର



# ଚରକ ଓ ଆୟୁର୍ବେଦ ବିଜ୍ଞାନ

ଖ୍ରୀ:ପୂ: ଅଷ୍ଟମ ଶତାବ୍ଦୀରୁ
ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ

ଭାରତ ବର୍ଷ ବହୁ ପ୍ରାଚୀନ କାଳରୁ ମାନବ ସଭ୍ୟତା ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଥିଲା। ଖ୍ରୀଷ୍ଟ ଜନ୍ମର ଅନେକ ବର୍ଷ ପୂର୍ବରୁ, ଧର୍ମ, ଦର୍ଶନ, କଳା, ସଂସ୍କୃତି, ବିଜ୍ଞାନ ଆଦି ପ୍ରତ୍ୟେକ କ୍ଷେତ୍ରରେ ଆମ ଦେଶ ଉତ୍କର୍ଷତାର ଚରମ ସୀମା ସ୍ପର୍ଶ କରିଥିଲା। ବେଦ, ଉପନିଷଦ, ରାମାୟଣ, ମହାଭାରତ

ତଥା ଗୀତା ଆଦି ପୁରାତନ ଗ୍ରନ୍ଥମାନେ ଏହାର ମୂକସାକ୍ଷୀ ରୂପେ ଏବେବି ବିଦ୍ୟମାନ । କିନ୍ତୁ ଉପଯୁକ୍ତ ପୃଷ୍ଠପୋଷକତାର ଅଭାବ ଯୋଗୁଁ ତଥା ବିଦେଶୀ ଶାସକ ମାନଙ୍କର ବାରମ୍ବାର ଆକ୍ରମଣ ଫଳରେ ଏ ଦେଶର ସଂସ୍କୃତି ଧୀରେ ଧୀରେ ଲୁପ୍ତ ହୋଇଯାଇଛି ।

ଭାରତୀୟ ଚିକିତ୍ସା ଶାସ୍ତ୍ର ବା ଆୟୁର୍ବେଦ ବିଜ୍ଞାନର ଇତିହାସ ମଧ୍ୟ ଏତେ ପ୍ରାଚୀନ ଓ ଏତେ ମହାନ୍ ଯେ, ବର୍ତ୍ତମାନ ତାହାର ଦୟନୀୟ ଅବସ୍ଥା ଦେଖିଲେ ଦୁଃଖିତ ତଥା ଲଜ୍ଜିତ ହେବାକୁ ପଡ଼େ । ଆଜକୁ ପ୍ରାୟ ତିନିହଜାର ବର୍ଷରୁ ଅଧିକ ସମୟ ପୂର୍ବରୁ ଆମଦେଶରେ ଏହି ବିଦ୍ୟାର ପ୍ରଚଳନ ଆରମ୍ଭ ହୋଇଛି । ଅତୀତରେ ଯେଉଁ ମହାନ୍ ଆୟୁର୍ବେଦ ବିଜ୍ଞାନୀଗଣ ସେମାନଙ୍କ ଅଲୌକିକ ପ୍ରତିଭା ବଳରେ ଭାରତୀୟ ଚିକିତ୍ସା ବିଜ୍ଞାନର ଉତ୍କର୍ଷତା ସାଧନ କରି ପାରିଥିଲେ ସେମାନଙ୍କ ମଧ୍ୟରେ ଆତ୍ରେୟ, ଚରକ, ସୁଶ୍ରୁତ, ବାଗଭଟ୍ଟ ଆଦି ଋଷିମାନେ ଅନ୍ୟତମ ।

କଥିତ ଅଛି ଯେ ସୃଷ୍ଟିକର୍ତ୍ତା ବ୍ରହ୍ମା ଚିକିତ୍ସା ବିଷୟ ଦକ୍ଷ - ପ୍ରଜାପତିଙ୍କୁ ବର୍ଣ୍ଣନା କରିଥିଲେ । ମର୍ତ୍ତ୍ୟମଣ୍ଡଳରେ ଯେତେବେଳେ ମାନବଗଣ ବିଭିନ୍ନ ରୋଗ କବଳରେ ପଡ଼ି ଅସହ୍ୟ ଯନ୍ତ୍ରଣା ଭୋଗକଲେ, ସେମାନେ ହିମାଳୟରେ ତପସ୍ୟା କରୁଥିବା ଭରଦ୍ୱାଜ ଋଷିଙ୍କ ନିକଟରେ ଶରଣ ପଶିଲେ । ଧ୍ୟାନ ବଳରେ ଭରଦ୍ୱାଜ ଜାଣିପାରିଲେ ଯେ, ଦେବରାଜ ଇନ୍ଦ୍ରଙ୍କ ଦରବାରରେ ହିଁ ଦକ୍ଷ ପ୍ରଜାପତିଙ୍କ ଠାରୁ ଏହି ଚିକିତ୍ସା ଶାସ୍ତ୍ର ଶିକ୍ଷା କରିପାରିଲେ ମହୀମଣ୍ଡଳର ଉପକାର ସାଧିତ ହେବ । ତେଣୁ ସେ ତାଙ୍କ ସ୍ଥୂଳ ଶରୀର ତ୍ୟାଗକରି ସ୍ୱର୍ଗକୁ ଯାଇ ସେଠାରେ ଏହି ଶାସ୍ତ୍ର ଅଧ୍ୟୟନ କଲେ । ସେଠାରୁ ପ୍ରତ୍ୟାବର୍ତ୍ତନ କରି ସେ ଆତ୍ରେୟ ଋଷିଙ୍କୁ ଏହି ଶାସ୍ତ୍ରଜ୍ଞାନ ଦେଲେ । ଖ୍ରୀଷ୍ଟ ଜନ୍ମର ପ୍ରାୟ ଏକ ହଜାର ବର୍ଷ ପୂର୍ବେ ଆତ୍ରେୟ ଋଷି ପ୍ରଥମେ ଆୟୁର୍ବେଦ ଶାସ୍ତ୍ର ରଚନା କଲେ । ଏହା ଆତ୍ରେୟ ସଂହିତା ନାମରେ ପ୍ରଖ୍ୟାତ । ଆତ୍ରେୟ ଯେଉଁ ମାନଙ୍କୁ ଏହି ଶିକ୍ଷାଦାନ କରିଥିଲେ ସେମାନଙ୍କ ମଧ୍ୟରେ ଚରକ ଋଷି ଅନ୍ୟତମ । ଆୟୁର୍ବେଦ ଶାସ୍ତ୍ର ଚରକଙ୍କ ଦ୍ୱାରା ପୁନର୍ଲିଖିତ ହେଲା । ତେଣୁ ଚରକଙ୍କୁହିଁ ପ୍ରକୃତ ଆୟୁର୍ବେଦ ବିଜ୍ଞାନର ଜନ୍ମଦାତା ବୋଲି କୁହାଯାଏ ।

ତାଙ୍କ ରଚିତ ଚରକ ସଂହିତା ଅନୁଯାୟୀ ଶରୀରରେ ରୋଗର କାରଣ ତ୍ରିଦୋଷ। ବାତ (ବାୟୁ), ପିତ ଓ କଫ ଏହିପରି ତିନିଗୋଟି ଦେହଦ୍ରବର ଭାରସାମ୍ୟ ଶରୀରରେ ନଥିଲେ ରୋଗର ଉତ୍ପତ୍ତି ହୁଏ।

କେବଳ ଚୀନକୁ ବାଦ୍ ଦେଲେ ଭାରତୀୟ ଚିକିତ୍ସା ଶାସ୍ତ୍ର ପୂର୍ବରୁ ଅନ୍ୟ କେଉଁ ଦେଶରେ ଚିକିତ୍ସା ସମ୍ବନ୍ଧୀୟ କୌଣସି ଶାସ୍ତ୍ର ଲେଖା ହୋଇଥିବାର ଏଯାବତ୍ ଜଣାନାହିଁ। ଗ୍ରୀସ୍ ଓ ରୋମରେ ସଭ୍ୟତାର ବିକାଶ ହେବାପରେ ସେମାନଙ୍କ ଦେଶରେ ଯେଉଁ ଚିକିତ୍ସାବିତ୍ ମାନେ ଆତ୍ମ ପ୍ରକାଶ କଲେ ସେମାନେ ଭାରତୀୟ ଆୟୁର୍ବେଦ ବିଜ୍ଞାନର ତଥ୍ୟ ମାନଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିବା ପରି ମନେହୁଏ।

ଆୟୁର୍ବେଦ ଶାସ୍ତ୍ରର ଜନ୍ମଦାତା ଏହି ମହାନ୍ ପ୍ରାଣ ଖ୍ରୀଷ୍ଟ ଜନ୍ମର ପ୍ରାୟ ୮୦୦ ବର୍ଷ ପୂର୍ବରୁ ଜନ୍ମ ଗ୍ରହଣ କରିଥିଲେ ବୋଲି ସୂଚନା ମିଳେ। ଭାରତ ଭୂ ଖଣ୍ଡରେ ତାଙ୍କର ଜନ୍ମ ହୋଇଥିଲେ ହେଁ ଆଧୁନିକ ଭାରତର ଠିକ୍ କେଉଁ ଅଞ୍ଚଳରେ ସେ ଜନ୍ମଲାଭ କରିଥିଲେ ସେକଥା ସ୍ଥିର କରିବା କଠିନ।

ଶିକ୍ଷାପ୍ରାପ୍ତି ପରେ ସେ ନିଜର ଧ୍ୟାନ, ଗବେଷଣା ଓ ଅଭିଜ୍ଞତା ଫଳରେ ଆୟୁର୍ବେଦର ଚରମ ବିକାଶ ସାଧନ କରିଥିଲେ। ରୋଗ ନିର୍ଣ୍ଣୟ ପ୍ରଣାଳୀ, ଚିକିତ୍ସା, ଔଷଧ ପ୍ରସ୍ତୁତି, ଚିକିତ୍ସକର ନୀତି ଓ କର୍ତ୍ତବ୍ୟ, ଦର୍ଶନ ଓ ଧର୍ମ ସହିତ ରୋଗ ଚିକିତ୍ସାଗତ ସମ୍ବନ୍ଧ ଆଦି ବିଷୟରେ ସେ ତାଙ୍କ ରଚିତ ଚରକ ସଂହିତାରେ ଗଭୀର ଭାବେ ଆଲୋଚନା କରିଛନ୍ତି।

ଆଧୁନିକ ଆଲୋପାଥି ଚିକିତ୍ସା ପ୍ରଣାଳୀର ପ୍ରଥମ ପ୍ରବର୍ତ୍ତକ ହିପୋକ୍ରେଟିସ୍‌ଙ୍କ ନାମରେ ଚିକିତ୍ସକମାନେ ଏକ ଶପଥ ପାଠ କରିଥାଆନ୍ତି। କିନ୍ତୁ ହିପୋକ୍ରେଟିସ୍‌ଙ୍କର ପ୍ରାୟ ୩୦୦ ବର୍ଷ ପୂର୍ବରୁ ଚରକ ହିଁ ଚିକିତ୍ସକ ମାନଙ୍କ ପାଇଁ ଏକ ନୀତିଶାସ୍ତ୍ର ପ୍ରଣୟନ କରିଥିଲେ। ତାଙ୍କ ଉପଦେଶ ଅନୁଯାୟୀ ଚିକିତ୍ସକର ଜୀବନ ରୋଗୀ ସେବାପାଇଁ ଉତ୍ସର୍ଗୀକୃତ ହେବା ବିଧେୟ। ତାଙ୍କର ବ୍ୟବହାର ଅତି ଅମାୟିକ, ମିଷ୍ଟ ଓ ଭଦ୍ର ହେବା ଉଚିତ୍।

ସମାଜର ଉତ୍ପୀଡ଼କ ତଥା ଅପରାଧୀ ମାନଙ୍କୁ ସେ ଚିକିତ୍ସା କରିବେ ନାହିଁ। ବିନା ଅନୁମତିରେ କିମ୍ବା ବିନା ନିମନ୍ତ୍ରଣରେ ସେ କୌଣସି ଗୃହରେ ପ୍ରବେଶ କରିବେ ନାହିଁ, ଇତ୍ୟାଦି..ଇତ୍ୟାଦି।

ଆୟୁର୍ବେଦର ଔଷଧ ପ୍ରସ୍ତୁତି ମୁଖ୍ୟତଃ ବିଭିନ୍ନ ଗୁଳ୍ମ ଲତାଦିର ପତ୍ର, ଫୁଲ, ଫଳ, ମୂଳ, ପଶୁ ପକ୍ଷୀଙ୍କର ଶରୀରର ବିଭିନ୍ନ ଅଂଶ ବିଶେଷ, ବିଭିନ୍ନ ଧାତୁର ଭସ୍ମ ଇତ୍ୟାଦିରୁ ହେଉଥିଲା। ଏହା ବ୍ୟତୀତ ଖାଦ୍ୟପେୟର ସଂଯମ ଆଚରଣ ପାଇଁ କଡ଼ା ନିର୍ଦ୍ଦେଶ ଦିଆଯାଇଥିଲା।

ଚରକ ସଂହିତା ଅନୁଯାୟୀ ଶରୀର ପଞ୍ଚମହାଭୂତର ସମଷ୍ଟି। ଭୂମି, ଜଳ, ଅଗ୍ନି, ବାୟୁ ଏବଂ ଆକାଶ ଏହାକୁ ନେଇ ଶରୀର ଗଠିତ ବୋଲି ଆୟୁର୍ବେଦ ମତଦିଏ। ତାଙ୍କ ମତାନୁଯାୟୀ ବିଭିନ୍ନ ସ୍ୱାଦର ଖାଦ୍ୟ ଶରୀର ମଧ୍ୟରେ ଭିନ୍ନ ଭିନ୍ନ କାର୍ଯ୍ୟ ସମ୍ପାଦନ କରିଥାଏ। ପାକସ୍ଥଳୀକୁ ଆୟୁର୍ବେଦ ଶାସ୍ତ୍ରରେ ପରୋକ୍ଷଭାବରେ ସମସ୍ତ ରୋଗର କାରଣ ବୋଲି କୁହାଯାଇଛି।

ପାକସ୍ଥଳୀରେ ଖାଦ୍ୟ ପ୍ରବେଶ କରିବାଠାରୁ ଆରମ୍ଭକରି ତାହାର ଜୀର୍ଣ୍ଣ ହୋଇନଥିବା ଅଂଶ ଶରୀରରୁ ବହିଷ୍କୃତ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ପ୍ରକ୍ରିୟା ବିଶଦଭାବେ ତାଙ୍କ ରଚନା ମାଧ୍ୟମରେ ବର୍ଣ୍ଣିତ ହୋଇଛି। ସେହି ବର୍ଣ୍ଣନା ଏତେ ପ୍ରାଞ୍ଜଳ ତଥା ବିଜ୍ଞାନ ସମ୍ମତ ଯେ ଆଧୁନିକ ବିଜ୍ଞାନରେ ମଧ୍ୟ ପଚନ ପ୍ରଣାଳୀର ତଦନୁରୂପ ବର୍ଣ୍ଣନା କରାଯାଇଛି। କେବଳ କେତେକ ନାମକରଣରେ ପରିବର୍ତ୍ତନ ହେବା ସ୍ୱାଭାବିକ।

ତାଙ୍କ ମତାନୁଯାୟୀ ଖାଦ୍ୟ ମୁଖ ଗହ୍ୱରରେ ପ୍ରବେଶ କରିବାପରେ ଯେଉଁ ସବୁ ରାସାୟନିକ ପ୍ରକ୍ରିୟା ଆରମ୍ଭ ହୁଏ ତା ଫଳରେ ଅଧିକାଂଶ ଖାଦ୍ୟ ତାହାର ନିଜସ୍ୱ ଗୁଣ ପରିହାର କରି ଏକ ସ୍ୱତନ୍ତ୍ର ଅବସ୍ଥା ପ୍ରାପ୍ତ ହୁଏ। ତେଣୁ ଚିକିତ୍ସକ ରୋଗୀକୁ କୌଣସି ଖାଦ୍ୟ ଖାଇବାପାଇଁ ଉପଦେଶ ଦେବା ପୂର୍ବରୁ ଖାଦ୍ୟର ଚରିତ୍ର ପ୍ରତି ଧ୍ୟାନ ଦେବା ବିଧେୟ। ମୁଖ ଗହ୍ୱରର ପ୍ରଭାବରେ ଖାଦ୍ୟରୁ କଫ ଜାତ ହୁଏ। ଏହି କଫ ସହିତ ଶରୀରରେ ଅନ୍ୟାନ୍ୟ ଅନେକ ଦ୍ରବ ମିଶ୍ରିତ ହୁଅନ୍ତି। ଏହା ଫଳରେ ପିତ ପ୍ରସ୍ତୁତ ହୁଏ। ଶରୀର ଖାଦ୍ୟରୁ

ଆବଶ୍ୟକୀୟ ସମସ୍ତ ପଦାର୍ଥ ପରିଶୋଷନ କରି ସାରିବା ପରେ ବାୟୁ ଜାତ ହୁଏ। ପାଚନ ପ୍ରକ୍ରିୟା ମଧ୍ୟରେ ଆହାର ରସ ପ୍ରସ୍ତୁତ ହୁଏ। ଆହାର ରସରୁ ରସଧାତୁର ପ୍ରସ୍ତୁତି ହୁଏ। ରସଧାତୁରୁ ରକ୍ତ, ମାଂସ, ଚର୍ବି, ମଜ୍ଜା, ବୀର୍ଯ୍ୟ ଏବଂ ଶକ୍ତିର ଜାତ ହୋଇଥାଏ। ଖାଦ୍ୟର ଯେଉଁ ଅଂଶ ଶରୀରର ବ୍ୟବହାରରେ ଆସେ ତାହାକୁ ପ୍ରସାଦ କୁହାଯାଏ। ଏତଦ୍‌ଭିନ୍ନ ଅନାବଶ୍ୟକ ଅଂଶ ଗୁଡ଼ିକ ମଳ ଏବଂ ମୂତ୍ର ଆକାରରେ ବାହାରକୁ ଚାଲିଯାଏ।

ଯେଉଁ ତ୍ରିଦୋଷ ବିଧିରେ ରୋଗ ନିର୍ଣ୍ଣୟ ହୁଏ ତାହା ପୂର୍ବରୁ ସୂଚିତ ହୋଇଛି। ଚରକଙ୍କ ମତାନୁସାରେ କଫ ପାକସ୍ଥଳୀରେ ପ୍ରସ୍ତୁତ ହୁଏ। ଏବଂ ଏହା ପାଞ୍ଚ ପ୍ରକାରର। ପାଚନ ଶକ୍ତି, ରକ୍ତ ସଞ୍ଚାଳନ, ସ୍ମରଣ ଶକ୍ତି, ମଳ ମୂତ୍ରର ବହିଷ୍କରଣ, ହସ୍ତ-ପଦର ମାଂସପେଶୀ, ବିଭିନ୍ନ ଗଣ୍ଠିର ଚଳନଶୀଳତା ଆଦି ଅନେକ ମୁଖ୍ୟ କାର୍ଯ୍ୟ ପାଇଁ ଏହା ଉଦ୍ଦିଷ୍ଟ। ପିତ, ପାକସ୍ଥଳୀ ଓ ଅନ୍ତ ମଧ୍ୟସ୍ଥ ଏକ ସ୍ଥାନରେ ପ୍ରସ୍ତୁତ ହୁଏ। ଏହା ଖାଦ୍ୟର ପଚନକ୍ରିୟାରେ ଏବଂ ଆହାରର ପ୍ରସ୍ତୁତିରେ ସାହାଯ୍ୟକରେ। ଏହା ଦୃଷ୍ଟିଶକ୍ତି, ଚର୍ମର ରଙ୍ଗ, ଯକୃତ ଓ ବୃକକ୍‌ର କ୍ରିୟା ସମ୍ପାଦନରେ ସାହାଯ୍ୟ କରେ। ଶରୀରରୁ ବିଭିନ୍ନ ଗର ପଦାର୍ଥର ନିଷ୍କାସନରେ ସାହାଯ୍ୟକରେ। ନିଃଶ୍ୱାସ ପ୍ରଶ୍ୱାସ କ୍ରିୟା ସାଧନ ତଥା ଅନ୍ୟାନ୍ୟ ଅନେକ ଉପାଦେୟ କ୍ରିୟାରେ ସାହାଯ୍ୟ କରେ।

ତେଣୁ ଏହି ବାୟୁ, ପିତ ଓ କଫ ଆଦିର ଅନିୟମିତତା ଦେଖାଦେଲେ ରୋଗର ଉତ୍ପତ୍ତି ଅବଶ୍ୟମ୍ଭାବୀ ବୋଲି ମତଦେଇ ଚରକ ତାଙ୍କ ଶାସ୍ତ୍ରରେ ଏହି ସବୁ ଦୋଷର ଦୂରୀକରଣ ପାଇଁ ଅନେକ ବିଧାନ କରିଛନ୍ତି।

ତାଙ୍କ ଚିକିତ୍ସା ପ୍ରଣାଳୀରେ ରୋଗକୁ ସଠିକ୍ ନିର୍ଦ୍ଧାରଣ କରିବାପାଇଁ ରୋଗୀର ପରୀକ୍ଷା ଖୁବ୍ ସୂକ୍ଷ୍ମ ଓ ଗଭୀରଭାବେ କରାଯାଉଥିଲା। ବ୍ୟକ୍ତିଗତ ତଥା ପାରିବାରିକ ଇତିହାସ ସଂଗ୍ରହ ସହିତ ରୋଗୀର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ପୁଙ୍ଖାନୁପୁଙ୍ଖ ପରୀକ୍ଷା, ନାଡ଼ୀ ପରୀକ୍ଷା ତଥା ମଳମୂତ୍ରର ପରୀକ୍ଷା କରାଯାଇ ରୋଗର ମୂଳ କେଉଁଠି ତାହା ନିର୍ଦ୍ଧାରିତ ହେଉଥିଲା। ଜୀବାଣୁକୁ ସ୍ୱଚକ୍ଷୁରେ ବା କୌଣସି ଯନ୍ତ୍ର ସାହାଯ୍ୟରେ ସେତେବେଳେ ସେ ଦେଖିନଥିଲେ

ସତ କିନ୍ତୁ କେତେକ ପ୍ରତିକୂଳ ପରିସ୍ଥିତିରେ ରୋଗ ଜୀବାଣୁ ଶରୀର ମଧ୍ୟରେ ପ୍ରବେଶ କରି ରୋଗ ଉତ୍ପତ୍ତି କରାଇପାରେ - ଏକଥା ସେ ବିଶ୍ୱାସ କରୁଥିଲେ ।

ତାଙ୍କ ଚିକିତ୍ସା ପ୍ରଣାଳୀରେ ଖାଦ୍ୟ ସଂଯମର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ପ୍ରତ୍ୟେକ ରୋଗରେ ଖାଦ୍ୟ ବା ପଥ୍ୟର ଏକ ଆବଶ୍ୟକ ତାଲିକା ଏବଂ ନିଷିଦ୍ଧ ତାଲିକା ରୋଗୀକୁ ଦିଆଯାଉଥିଲା । ତାଙ୍କର ବିଶ୍ୱାସ ଯେ, ପ୍ରତ୍ୟେକ ଔଷଧ ପାକସ୍ଥଳୀରୁ ହିଁ ଯାଇ ଶରୀରରେ ପ୍ରଭାବ ପକାଏ । ତେଣୁ ଔଷଧର ଗୁଣପ୍ରାପ୍ତି ପାଇଁ ପାକସ୍ଥଳୀରେ ଅନୁକୂଳ ପରିବେଶ ସୃଷ୍ଟି କରିବାକୁ ହେଲେ ଉପଯୁକ୍ତ ଖାଦ୍ୟ ଖାଇବା ସର୍ବାଦୌ କର୍ତ୍ତବ୍ୟ ।

ଚରକଙ୍କ ପରବର୍ତ୍ତୀ କାଳରେ ଶୁଶ୍ରୁତ ମଧ୍ୟ ଆୟୁର୍ବେଦର ଉଲ୍ଲେଖନୀୟ ଅଗ୍ରଗତି କରାଇ ପାରିଥିଲେ । ଖ୍ରୀଷ୍ଟପୂର୍ବ ୬୦୦ ବର୍ଷ ବେଳେ ସେ ବିଭିନ୍ନ ଅସ୍ତ୍ରୋପଚାର କରି ବିପୁଳ ସୁନାମ ଅର୍ଜନ କରିଥିଲେ । ଶେଷ ଶତାବ୍ଦୀ ପର୍ଯ୍ୟନ୍ତ ଆୟୁର୍ବେଦର କ୍ରମୋନ୍ନତି ହେଉଥିଲା । କିନ୍ତୁ ଦୁଃଖର କଥା ଏହି ସର୍ବପୁରାତନ ଉପାଦେୟ ଚିକିତ୍ସା ଶାସ୍ତ୍ର ତା ପରବର୍ତ୍ତୀ କାଳରୁ ଧୀରେ ଧୀରେ ଅବନତି କରିବାକୁ ଆରମ୍ଭ କଲା ।

ବିଂଶ ଶତାବ୍ଦୀର ଶେଷ ଭାଗକୁ ଆମ ଦେଶର ସରକାର ଏହି ପୁରାତନ ଚିକିତ୍ସା ପଦ୍ଧତିର ପୁନରୁଦ୍ଧାର ଓ ପୁନର୍ବିକାଶ କାର୍ଯ୍ୟରେ ମନୋନିବେଶ କରିଛନ୍ତି । ଶାସ୍ତ୍ରଜ୍ଞ ପଣ୍ଡିତମାନେ ଆମ ଦେଶର ଐତିହ୍ୟ ଓ ସଂସ୍କୃତି ପ୍ରତି ସଚେତନ ହୋଇ ଯଦି ଆୟୁର୍ବେଦ ଚିକିତ୍ସା ବିଜ୍ଞାନରେ ନୂତନ ଗବେଷଣା କରି ବିଶ୍ୱ ଦରବାରରେ ଏହାର ପୁନଃ ପ୍ରତିଷ୍ଠା କରାଇପାରିବେ ତେବେ ଚରକଙ୍କର ଅମର ଆତ୍ମା ପ୍ରତି ସେଇହିଁ ହେବ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।





# ସୁଶ୍ରୁତ ଓ ପୁରାତନ ଶଲ୍ୟ ଚିକିତ୍ସା

ଖ୍ରୀଷ୍ଟ ପୂର୍ବ ଅଷ୍ଟମ ଶତାବ୍ଦୀରୁ
ଖ୍ରୀଷ୍ଟପୂର୍ବ - ଷଷ୍ଠ ଶତାବ୍ଦୀ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଆମ ଦେଶରେ ଋଷି ମୁନୀ ମାନଙ୍କ କଠୋର ସାଧନା ଫଳରେ କଳା, ସାହିତ୍ୟ ଓ ସଂସ୍କୃତି ତଥା ବିଜ୍ଞାନର ଯଥେଷ୍ଟ ଉନ୍ନତି

ସାଧିତ ହୋଇଥିଲା। ଚିକିତ୍ସା ବିଜ୍ଞାନରେ ମଧ୍ୟ ଭାରତ ବର୍ଷରେ କେତେକ ମହର୍ଷି ତାଙ୍କର ଉତ୍କର୍ଷତା ପ୍ରତିପାଦନ କରି ମାନବ ସମାଜର ଅଶେଷ କଲ୍ୟାଣ ସାଧନ କରିବା ସହିତ ନିଜ ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି। ସେହି ମହର୍ଷି ମାନଙ୍କ ମଧ୍ୟରେ ସୁଶ୍ରୁତ ଅନ୍ୟତମ। ତାଙ୍କ ଦ୍ୱାରା ପ୍ରଣୀତ ସୁଶ୍ରୁତ ସଂହିତା ଗ୍ରନ୍ଥ ସେହି ଅମର ପ୍ରତିଭାର ପରିଚୟ ଦିଏ।

ସୁଶ୍ରୁତଙ୍କ ପ୍ରଣୀତ ଶରୀର ତନ୍ତ୍ରରେ ଶରୀର ବ୍ୟବଚ୍ଛେଦ ବିଦ୍ୟା ସହିତ ରୋଗ ନିର୍ଣ୍ଣୟ ପ୍ରଣାଳୀ, ରୋଗ ମାନଙ୍କର ଲକ୍ଷଣ, ଚିକିତ୍ସା ବିଦ୍ୟା ତଥା ବୈଦ୍ୟ ବା ଚିକିତ୍ସକ ମାନଙ୍କ ପାଇଁ ନୀତିଜ୍ଞାନ ଏବଂ ଶଲ୍ୟ ଚିକିତ୍ସା ବା ଅସ୍ତ୍ର ଚିକିତ୍ସାର ବିଶଦ ବିବରଣୀ ପ୍ରଦତ୍ତ ହୋଇଛି। ତାଙ୍କ ଜୀବନକାଳ ମଧ୍ୟରେ ସେ ଅନେକ ଶବ ବ୍ୟବଚ୍ଛେଦ କରି ତାହାର ପ୍ରକୃତ ବିଧି ବିଷୟରେ ଯେଉଁ ବର୍ଣ୍ଣନା କରିଛନ୍ତି ତାହା ସମସାମୟିକ ଅନ୍ୟ କୌଣସି ଚିକିତ୍ସକ କରିପାରିନାହାନ୍ତି। ଶରୀର ବିଜ୍ଞାନ ବିଷୟରେ ମଧ୍ୟ ତାଙ୍କର ରଚନା ସର୍ବ ପ୍ରଥମ ବୋଲି ମନେ କରାଯାଏ।

ଆଧୁନିକ ଚିକିତ୍ସା ବିଜ୍ଞାନର ଅନେକ ମହାରଥୀ ସୁଶ୍ରୁତଙ୍କ ପ୍ରଣୀତ ଗ୍ରନ୍ଥ ପଢ଼ି ତାଙ୍କୁ ଆଧୁନିକ ଶଲ୍ୟ ଚିକିତ୍ସାର ଜନ୍ମଦାତା ବୋଲି ମତ ଦେଇଛନ୍ତି। ଜର୍ମାନୀ ପରି ପ୍ରଗତିଶୀଳ ଦେଶରେ ମଧ୍ୟ ତାଙ୍କ ଗ୍ରନ୍ଥ ଓ ବ୍ୟକ୍ତିତ୍ୱର ପ୍ରଶଂସା ଏବେ ବି ଶୁଣିବାକୁ ମିଳେ।

ପ୍ରତ୍ୟେକ ଚିକିତ୍ସକ ରୋଗ ନିରୂପଣ, ଔଷଧ ପ୍ରୟୋଗ ତଥା ଶଲ୍ୟ ଚିକିତ୍ସା ପ୍ରତ୍ୟେକ କ୍ଷେତ୍ରରେ ପାରଙ୍ଗମ ହେବା ବିଧେୟ ବୋଲି ସେ ଯୁକ୍ତି କରିଛନ୍ତି। ତାଙ୍କ ମତରେ ଚିକିତ୍ସକଙ୍କର ଯଦି କେବଳ ଗୋଟିଏ ବିଭାଗରେ ଜ୍ଞାନ ଥାଏ, ତାଙ୍କୁ ଏକ ଡେଣା ବିଶିଷ୍ଟ ଗୋଟିଏ ପକ୍ଷୀ ସହିତ ତୁଳନା କରାଯାଇପାରେ।

ଶବ ବ୍ୟବଚ୍ଛେଦ କରି ସେ ଶରୀର ମାଂସପେଶୀ, ସ୍ନାୟୁ, ଅସ୍ଥି ଯୋଡ଼, ଅସ୍ଥି ସଂଯୋଜକ ଝିଲ୍ଲୀ ବା ଦାମନୀ, ଧମନୀ ଓ ଶିରା ପ୍ରଭୃତିର ବର୍ଣ୍ଣନା କରିଛନ୍ତି। ଶରୀରର ବିଭିନ୍ନ ଅଂଶର ସବିଶେଷ ବିବରଣୀ ପାଶ୍ଚାତ୍ୟ

ଦେଶ ମାନଙ୍କରେ ତାଙ୍କର ପ୍ରାୟ ଦୁଇହଜାର ବର୍ଷପରେ ଲୋକମାନେ ଜାଣିବାକୁ ପାଇଲେ।

ସୁଶ୍ରୁତଙ୍କ ମତରେ ଶରୀର ମୁଖ୍ୟତଃ ତିନିଗୋଟି ଉପାଦାନରେ ସମତା ରକ୍ଷା କରିଥାଏ। ସେହି ତିନିଗୋଟି ଉପାଦାନ ହେଲା ବାୟୁ, ପିତ ଓ କଫ। ଶରୀରର ବିଭିନ୍ନ ତନ୍ତୁଜାତ ତରଳ ପଦାର୍ଥ ବା ରସ ଏହି ତିନି ଉପାଦାନର ଉତ୍ସ। ବାୟୁ ହିଁ ସ୍ନାୟୁ ଶକ୍ତିର ପରିଗ୍ରାହକ। ଏହା ପାଞ୍ଚପ୍ରକାରର। ପିତ ଚାରିପ୍ରକାରର ଏବଂ ଏହା ବିଭିନ୍ନ ପାଚନ ରସର ସମଷ୍ଟି। କଫକୁ ମଧ୍ୟ ସେ ପାଞ୍ଚଭାଗରେ ଚିହ୍ନିତ କରାଇଛନ୍ତି। ଏହା ଗଣ୍ଠି ମାନଙ୍କରେ ଥିବା ତରଳ ପଦାର୍ଥ ବା ସନ୍ଧିରସ ଓ ଶ୍ୱାସନଳୀରୁ ବାହାରୁଥିବା ଅର୍ଦ୍ଧ ତରଳ ପଦାର୍ଥ ଭାବେ ଚିହ୍ନିତ ହୋଇଛି। ଆୟୁର୍ବେଦର ଏହି ମୂଳ ତତ୍ତ୍ୱକୁ ଆଧୁନିକ ଏଲୋପାଥି ଚିକିତ୍ସା ହୁଏତ ସ୍ୱୀକାର କରିନପାରେ। କିନ୍ତୁ ଏହି ତଥ୍ୟକୁ ଆଧାର କରି ସେ ଅଗଣିତ ଜନତାଙ୍କୁ ରୋଗମୁକ୍ତ କରାଇଥିବାର ପ୍ରମାଣ ରହିଛି।

ଆଧୁନିକ ଚିକିତ୍ସା ବିଜ୍ଞାନ ଦ୍ୱାରା ଯେଉଁ ଜ୍ଞାନ ମଣିଷ ପାଖରେ ଗତ ଦୁଇ ଶତାବ୍ଦୀ ମଧ୍ୟରେ ପହଞ୍ଚିପାରିଛି, ସେ ସବୁ ସୁଶ୍ରୁତ ଅନେକ ପୂର୍ବରୁ (ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ) ତାଙ୍କ ଗ୍ରନ୍ଥ ମାଧ୍ୟମରେ ଲୋକ ଲୋଚନକୁ ଆଣିଥିଲେ। କିନ୍ତୁ ଦୁଃଖର କଥା ପରବର୍ତ୍ତୀ କାଳରେ ଭାରତବର୍ଷ ବିଭିନ୍ନ ଆକ୍ରମଣକାରୀଙ୍କ ଦ୍ୱାରା ଶାସିତ ହେବା ଫଳରେ. ଆୟୁର୍ବେଦକୁ ଆଉ ପ୍ରୋତ୍ସାହନ ମିଳିଲା ନାହିଁ। ବାହାର ଦେଶରୁ ଆସିଥିବା ଶାସକ ମାନେ ତାଙ୍କ ଦେଶର ଚିକିତ୍ସା ପ୍ରଣାଳୀର ପୃଷ୍ଠ ପୋଷକତା କରି ତାର ପ୍ରଚାର ଓ ପ୍ରସାର କରାଇଲେ। ଅନେକ ଶତାବ୍ଦୀ ବ୍ୟାପୀ ଆୟୁର୍ବେଦ ଶାସ୍ତ୍ର ଅବହେଳିତ ଓ ଉପେକ୍ଷିତ ଅବସ୍ଥାରେ ପଡ଼ିରହିଲା। ଶେଷରେ ଏପରି ଏକ ସମୟ ଆସିଲା ଯେ, ଏତେ ଉନ୍ନତ ଆୟୁର୍ବେଦକୁ ମାନବ ସମାଜ ପ୍ରାୟତଃ ଭୁଲିଗଲା କହିଲେ ଅତ୍ୟୁକ୍ତି ହେବନାହିଁ।

ବିଭିନ୍ନ ରୋଗର ଲକ୍ଷଣ ତଥା ନିଦାନର ଯେଉଁ ବିସ୍ତୃତ ବିବରଣୀ ସୁଶ୍ରୁତଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ ତାହା ଆଜିର ଚିକିତ୍ସକଙ୍କୁ ବିସ୍ମିତ କରେ। ଉଦାହରଣ ସ୍ୱରୂପ କୁଷ୍ଠରୋଗ ବିଷୟରେ ସେ ଲେଖିଛନ୍ତି ଯେ, ଏହା

ଏକ ସ୍ପର୍ଶଜନିତ ରୋଗ। ଏହି ରୋଗ ଯୋଗୁ ଚର୍ମ ସ୍ପର୍ଶଶକ୍ତି ହରାଏ। ଜୀବସାର 'ଗ' ଅଭାବରୁ ହେଉଥିବା ସ୍କର୍ଭି ରୋଗର ଲକ୍ଷଣ ବିଷୟରେ ମଧ୍ୟ ସେ ବର୍ଣ୍ଣନା କରିଛନ୍ତି। ଦାନ୍ତ ମାଢ଼ି ଫୁଲିଯିବା, ହଠାତ୍ ସେଥିରୁ ରକ୍ତ ବାହାରିବା ଓ ପରେ ଏହା ପଚିଯାଇ ପୂଜ ଓ ଦୁର୍ଗନ୍ଧ ନିର୍ଗତ ହେବା ଏହାର ଲକ୍ଷଣ। ହୃଦ୍‌ରୋଗ ବିଷୟରେ ମଧ୍ୟ ତାଙ୍କର ଗଭୀର ଅଧ୍ୟୟନ ଦେଖିଲେ ବିସ୍ମିତ ହେବାକୁ ପଡ଼େ।

ସୁଶ୍ରୁତଙ୍କ ଦ୍ୱାରା ପ୍ରସ୍ତୁତ ଅଧିକାଂଶ ଔଷଧ ଗଛର ଚେରମୂଳି ତଥା ଧାତବ ପଦାର୍ଥରୁ ତିଆରି ହେଉଥିଲା। ସମୁଦାୟ ୭୬୦ ପ୍ରକାରର ଔଷଧିଗୁଣ ଯୁକ୍ତ ବୃକ୍ଷଲତାର ବ୍ୟବହାର ବିଧି ତାଙ୍କ ଗ୍ରନ୍ଥରେ ସନ୍ନିବିଷ୍ଟ। ସୁଖର କଥା ଆଧୁନିକ ଚିକିତ୍ସା ବିଜ୍ଞାନ ମଧ୍ୟ ତାଙ୍କ ବର୍ଣ୍ଣିତ ଅଧିକାଂଶ ଉଦ୍‌ଭିଦାଂଶକୁ ଔଷଧରେ ପ୍ରୟୋଗ କରୁଛି।

କିନ୍ତୁ ଏସବୁ ସତ୍ତ୍ୱେ ସୁଶ୍ରୁତଙ୍କର ପ୍ରକୃତ ବ୍ୟକ୍ତିତ୍ୱ ଓ ପାଣ୍ଡିତ୍ୟ ତାଙ୍କ ଦ୍ୱାରା ରଚିତ ସର୍ଜରୀ ବା ଶଲ୍ୟ ଚିକିତ୍ସା ପଦ୍ଧତି (ସୁଶ୍ରୁତ ସଂହିତାର ଅନ୍ୟ ଏକ ଅଂଶ) ମାଧ୍ୟମରେ ପ୍ରକାଶିତ ହୋଇଛି। ଶଲ୍ୟ ଚିକିତ୍ସା ପାଇଁ ବ୍ୟବହୃତ ବିଭିନ୍ନ ପ୍ରକାରର ଅସ୍ତ୍ର ମଧ୍ୟରେ ଛୁରୀ, ଛୁଞ୍ଚି, ସୂକ୍ଷ୍ମ ଚିମୁଟା, ପ୍ରୋବ୍ ବା ଅଭ୍ୟନ୍ତର ପରୀକ୍ଷା ନିମନ୍ତେ ବ୍ୟବହାର କରାଯାଉଥିବା ସ୍ଥୂଳାଗ୍ର, ସିଲାଇ ପାଇଁ ନାଇଲନ୍ ବା ସିଲ୍‌କ୍ ସୂତା ଇତ୍ୟାଦିର ବର୍ଣ୍ଣନା ତାଙ୍କ ଗ୍ରନ୍ଥରେ ଦେଖିବାକୁ ମିଳେ। ଶଲ୍ୟ ଚିକିତ୍ସାର ବିଭିନ୍ନ ଉପାୟ ଯଥା:- ଛେଦନ, ଉତ୍ପାଦନ, ଶୂନ୍ୟକରଣ ବିଭିନ୍ନ ସ୍ଥାନରୁ ପୂଜ ବା ପାଣିର ଶୋଷଣ ପ୍ରଣାଳୀ ଦ୍ୱାରା ନିଷ୍କାସନ ତଥା କ୍ଷତର ସିଲାଇ ଇତ୍ୟାଦିକୁ ସେ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିଛନ୍ତି।

ଏ' ସବୁକୁ ବିଗ୍ଭରକୁ ନେଲେ ସୁଶ୍ରୁତ ଯେ ଶଲ୍ୟ ଚିକିତ୍ସାର ପ୍ରଥମ ପ୍ରବର୍ତ୍ତକ ଏଥିରେ ସନ୍ଦେହ ନାହିଁ।

ସ୍ୱାଭାବିକ୍ ଭାବେ ସନ୍ତାନ ଜନ୍ମ ହେବାରେ ଅସୁବିଧା ଥିଲେ ତଳିପେଟ ଓ ଜରାୟୁକୁ ଚିରି ପ୍ରସବ କରାଯାଏ। ଏହି ଅପରେସନକୁ 'ସିଜରିଆନ୍ ସେକ୍‌ସନ୍' କୁହାଯାଏ। ପ୍ରଥମେ ଜୁଲିଆସ ସିଜର୍ ଏହି ପ୍ରକାର ଜନ୍ମ ନେଇଥିଲେ ବୋଲି ଏ ଅପରେସନ୍ ତାଙ୍କ ନାମାନୁସାରେ କରାଯାଇଛି।

ସୁଶ୍ରୁତଙ୍କ ଗ୍ରନ୍ଥରେ କିନ୍ତୁ ଏହି ଅପରେସନ୍ ବିଷୟ ବିଶଦଭାବେ ବର୍ଣ୍ଣିତ ହୋଇଛି। ତେଣୁ ପ୍ରକୃତରେ କହିବାକୁ ଗଲେ ଅନେକ ପ୍ରକାରର ଆଧୁନିକ ଅସ୍ତ୍ରୋପଚାରର ଆଧୁନିକ ଚିକିତ୍ସା ବିଜ୍ଞାନର ଅନେକ ପୂର୍ବରୁ ସୁଶ୍ରୁତଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା।

ମୂତ୍ରାଶୟରୁ ପଥର ବାହାର କରିବା ପାଇଁ ସୁଶ୍ରୁତ ଯେଉଁ ଅପରେସନ୍ ପଦ୍ଧତି ଅନୁସରଣ କରୁଥିଲେ ତାହା ଅଦ୍ୟାବଧି ଆଦୃତ। ତାଙ୍କ ଅପରେସନ୍ ପଦ୍ଧତିର ବ୍ୟାଖ୍ୟା କରିବା ଏଠାରେ ଅନାବଶ୍ୟକ। କିନ୍ତୁ ଏକଥା ନିଶ୍ଚିତ ଯେ, ଏ ପର୍ଯ୍ୟନ୍ତ ତାଙ୍କ ପଦ୍ଧତିକୁ କୌଣସି ଆଧୁନିକ ସର୍ଜନ୍ ଅବଜ୍ଞା କରି ମତ ଦେବାର ଦୁଃସାହସ କରିନାହାନ୍ତି।

ପ୍ଲାଷ୍ଟିକ୍ ସର୍ଜରୀ ବା ଅଭିଗଠନ ଶଲ୍ୟ ତନ୍ତ୍ର ନାମ ଖୁବ୍ ଆଧୁନିକ ନିଶ୍ଚୟ। ଶରୀରର ବିଭିନ୍ନ କ୍ଷତିଗ୍ରସ୍ତ ବା ବିକଳାଙ୍ଗ ଅଙ୍ଗ ପ୍ରତ୍ୟଙ୍ଗ ସ୍ଥାନରେ ଶରୀରର ଅନ୍ୟ ସ୍ଥାନରୁ ନେଇ ଚମଡ଼ା ଆବରଣ ଦେବାଠାରୁ ଆରମ୍ଭକରି ଆବଶ୍ୟକତା ଅନୁଯାୟୀ ଏକସ୍ଥାନରୁ ମାଂସ/ଅସ୍ଥି ଇତ୍ୟାଦି ବିଭିନ୍ନ ତନ୍ତୁର ପୁନଃରୋପଣ ପୂର୍ବକ ଇଚ୍ଛାନୁଯାୟୀ ଶରୀରର ଅଂଶ ଗୁଡ଼ିକର ପୁନଃଗଠନ ଏହି ଅଭିଗଠନ ଶଲ୍ୟତନ୍ତ୍ର ମାଧ୍ୟମରେ କରାଯାଇପାରେ। ବିସ୍ମୟର କଥା ଯେ ସୁଶ୍ରୁତ ତାଙ୍କ ସମୟରେ ଏହି ବିଦ୍ୟାରେ ମଧ୍ୟ ନିପୁଣ ଥିଲେ। ପୃଥିବୀର ଅନ୍ୟାନ୍ୟ ଦେଶ ମାନଙ୍କରେ ଏହି ବିଦ୍ୟା ପ୍ରଚଳିତ ହେଲା ଅନେକ ବିଳମ୍ବରେ। ଜର୍ମାନୀର ବିଶିଷ୍ଟ ପ୍ଲାଷ୍ଟିକ ସର୍ଜନ ଡା : ହିର୍ଛବର୍ଗ ସୁଶ୍ରୁତଙ୍କ ଗ୍ରନ୍ଥ ପଢ଼ିସାରିବାପରେ ମତ ଦେଇଛନ୍ତି ଯେ, ଭାରତ ବର୍ଷର ଏହି ଚିକିତ୍ସକଙ୍କ ଦ୍ୱାରା ୟୁରୋପୀୟ ପ୍ଲାଷ୍ଟିକ୍ ସର୍ଜରୀ ବହୁଳଭାବେ ପ୍ରଭାବିତ ତଥା ମାର୍ଜିତ ହୋଇଛି। ବର୍ତ୍ତମାନର ଅବସ୍ଥା ଯାହା ହେଉନା କାହିଁକି ଏହି ବିଜ୍ଞାନ ଏକଦା ଭାରତ ବର୍ଷରେ ସୁଶ୍ରୁତଙ୍କ ନେତୃତ୍ୱରେ ବହୁଳଭାବେ ପ୍ରଗ୍ୱରିତ, ବ୍ୟବହୃତ ଓ ଆଦୃତ ହୋଇଥିଲା। ସେ ନିଃସଙ୍କୋଚ ଭାବେ ସୁଶ୍ରୁତଙ୍କୁ ଅଭିଗଠନ ଶଲ୍ୟତନ୍ତ୍ରର ପ୍ରବର୍ତ୍ତକ ବୋଲି ସ୍ୱୀକାର କରିଛନ୍ତି।

ଯେତେବେଳେ ମନୁ ସ୍ମୃତିର ନୀତି ନିୟମ ଅନୁଯାୟୀ ରାଜାମାନେ ଦୋଷୀକୁ ଦଣ୍ଡାଦେଶ ଦେଉଥିଲେ। ତଦନୁଯାୟୀ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ଦୋଷୀଙ୍କର ନାକ ବା କାନ କାଟି ଦିଆଯାଉଥିଲା। ପ୍ରମାଣ ଅଛି ଯେ,

୬୦୦ରୁ ଊର୍ଦ୍ଧ୍ୱ ଲୋକଙ୍କର ନାକର ପୁନଃଗଠନ ସୁଶ୍ରୁତ କରିଛନ୍ତି । ନାକ ଓ କାନର ପୁର୍ନଗଠନ କିପରି କରାଯାଏ ତାହାର ବ୍ୟାଖ୍ୟା ସୁଶ୍ରୁତ ସଂହିତାରେ ରହିଛି ।

ଶାନ୍ତିରେ ଓ ଯୁଦ୍ଧରେ ଚିକିତ୍ସକର କର୍ତ୍ତବ୍ୟ ଓ ନୀତି ବିଜ୍ଞାନ ବିଷୟ ତାଙ୍କ ଗ୍ରନ୍ଥରେ ଲିପିବଦ୍ଧ କରାଯାଇଛି । ଚିକିତ୍ସକର ନୀତି ନିୟମ ଓ ତ୍ୟାଗ ପ୍ରତି ଅନୁରକ୍ତି ଥିବା ବିଧେୟ ବୋଲି ସେ ବାରମ୍ବାର ଦର୍ଶାଇଛନ୍ତି । ତାଙ୍କ ମତରେ ଯୁଦ୍ଧବେଳେ ଶାସକ ତାଙ୍କ ସହିତ ଖୁବ୍ ବିଚକ୍ଷଣ ଚକିତ୍ସକ ମାନଙ୍କୁ ନେବା ବିଧେୟ । ଚିକିତ୍ସକଙ୍କ ତମ୍ବୁ ଶାସକଙ୍କ ଖୁବ୍ ନିକଟରେ ରହିବା ଆବଶ୍ୟକ । ସେ ତମ୍ବୁ ଉପରେ ଏକ ପତାକା ଦେଖି ଯେପରି ରୋଗୀ ବା କ୍ଷତାକ୍ତ ବ୍ୟକ୍ତି ସହଜରେ ଚିକିତ୍ସକଙ୍କ ନିକଟରେ ପହଂଚି ପାରିବ । ଯେଉଁ ସ୍ଥାନରେ ଜଳ, ଖାଦ୍ୟ ଓ ଜାଳେଣୀ ସହଜରେ ମିଳିପାରୁଥିବ, ତଥା ଯେଉଁ ସ୍ଥାନ ବାସପୋଯୋଗୀ ହୋଇଥିବ ସେଠାରେ ସୈନ୍ୟ ଛାଉଣୀ ପକାଇବାପାଇଁ ରାଜାଙ୍କୁ ଚିକିତ୍ସକ ଉପଦେଶ ଦେବେ । କୌଣସି ସ୍ଥାନରେ ବିଷ ବା ସୈନ୍ୟମାନଙ୍କୁ କ୍ଷତିଗ୍ରସ୍ତ କରିବାପରି କୌଣସି କାରଣ ଦେଖିଲେ ଚିକିତ୍ସକହିଁ ତାହାକୁ ଦୂରକରି ସୈନ୍ୟ ମାନଙ୍କୁ ମୃତ୍ୟୁ ବା କ୍ଷୟକ୍ଷତିରୁ ରକ୍ଷା କରିବେ ।

ସୁଖର କଥା, ଧୀରେ ଧୀରେ ଆଧୁନିକ ଚିକିତ୍ସା ବିଜ୍ଞାନ ସୁଶ୍ରୁତଙ୍କ ପ୍ରଦତ୍ତ ଜ୍ଞାନପ୍ରତି ସଚେତନ ହେଉଛି । ଏକଦା ତାଙ୍କଦ୍ୱାରା ପ୍ରବର୍ତ୍ତିତ ପଦ୍ଧତି ଗୁଡ଼ିକର ପୁନରୁଦ୍ଧାର ଓ ପୁନଃମାର୍ଜନା କରାଗଲେ ଆଜିର ଉନ୍ନତ ଦେଶଗୁଡ଼ିକ ଆମକୁ ଅନୁସରଣ କରିବେ ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ସୁଶ୍ରୁତ ଜନ୍ମ ନେଇଥିଲେ । ଆମ ଦେଶରେ ଏଭଳି ଏକ ବରପୁତ୍ରଙ୍କର ଜନ୍ମ ଓ ମୃତ୍ୟୁ କେବେ ହୋଇଥିଲା ଅବିକଳଭାବେ ଜଣାପଡ଼ିନାହିଁ । ସମୟର ସ୍ରୋତରେ ହୁଏତ ତାହା ଲୀନ ହୋଇଯାଇଅଛି । କିନ୍ତୁ ସୁଶ୍ରୁତ ସଂହିତା ଏବେ ମଧ୍ୟ ତାଙ୍କର ମହାମାନବତ୍ୱର ଧ୍ୱଜା ଉଡ଼ାଉଛି ।

●



# ହିପୋକ୍ରେଟିସ୍ ଓ ପୁରାତନ ଆୟୁର୍ବିଜ୍ଞାନ

## ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀ

ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବେ ଆୟୁର୍ବିଜ୍ଞାନ ୟୁରୋପରେ ପ୍ରକୃତରେ ବିଜ୍ଞାନ ରୂପରେ ନ ଥିଲା। ସେ ସମୟରେ ବିଭିନ୍ନ ରୋଗର ଚିକିତ୍ସା କୌଣସି ଯୁକ୍ତିଯୁକ୍ତ ବା ବିଜ୍ଞ ନୀତି ନିୟମ ଉପରେ ପର୍ଯ୍ୟବେକ୍ଷିତ ନହୋଇ ବରଂ କେତେକ ପରମ୍ପରାଗତ ଅନ୍ଧବିଶ୍ୱାସ ଉପରେ ଆଧାରିତ

ହୋଇଥିଲା । ଫଳରେ ଅଧିକାଂଶ ସମୟରେ ରୋଗୀ ତଥାକଥିତ ଚିକିତ୍ସକଙ୍କ ଉତ୍ପୀଡ଼ନର ଶୀକାର ହେବାକୁ ବାଧ୍ୟ ହେଉଥିଲା । ସମାଜରେ କେତେକ ପ୍ରଭାବଶାଳୀ ବ୍ୟକ୍ତି ଚିକିତ୍ସକଙ୍କର ଭୂମିକା ଗ୍ରହଣ କରୁଥିଲେ । ସେଥିପାଇଁ ସାମାଜିକ ପ୍ରତିଷ୍ଠା ଓ ବଂଶଗତ ପୃଷ୍ଠଭୂମି ଅଧିକ ଆବଶ୍ୟକ ହେଉଥିଲା ଶିକ୍ଷାଗତ ଯୋଗ୍ୟତା ଅପେକ୍ଷା ।

ମାନବ ସଭ୍ୟତା ଇତିହାସର ଏହି ଅନ୍ଧକାର ମଧ୍ୟରେ ଖ୍ରୀଷ୍ଟପୂର୍ବ ୪୬୦ରେ ଏକ ଆଲୋକ ବର୍ତ୍ତିକାର ଆବିର୍ଭାବ ପରଠାରୁ ଆୟୁର୍ବିଜ୍ଞାନ ଏକ ନିର୍ଦ୍ଦିଷ୍ଟ ମୋଡ଼ ନେଲା ଏବଂ ତା'ପରଠାରୁ ଏହା ସମୟ ସହିତ ତାଳଦେଇ ଉନ୍ନତି ପଥରେ ଅଗ୍ରସର ହେବାକୁ ଲାଗିଲା । ହିପୋକ୍ରେଟିସଙ୍କ ସମସାମୟିକ ଅନ୍ୟ ପ୍ରମୁଖ ବ୍ୟକ୍ତିମାନେ ହେଲେ ଦାର୍ଶନିକ ଡେମୋକ୍ରାଇଟସ୍, ରାଷ୍ଟ୍ରନୀତିଜ୍ଞ ପେରିକ୍ଲିସ୍, ଐତିହାସିକ ହେରୋଡ଼ଟସ୍, କବି ପିଣ୍ଡାର ଓ ନାଟ୍ୟକାର ଏସ୍କିଲସ୍ ଇତ୍ୟାଦି ।

ତାଙ୍କ ରଚିତ ପୁସ୍ତକାବଳୀ ଅନେକ ନଷ୍ଟ ହୋଇଯାଇଥିଲେହେଁ, ତାଙ୍କ ବିଷୟରେ ଏ ପର୍ଯ୍ୟନ୍ତ ଯେତେସବୁ ପୁସ୍ତକ ଲେଖାଯାଇଛି, ପୃଥିବୀର ଆଉ କୌଣସି ଆୟୁର୍ବିଜ୍ଞାନୀଙ୍କ ବିଷୟରେ ଏତେ ଲେଖାଯାଇନାହିଁ । ତାଙ୍କ ବିଷୟରେ ଗବେଷଣା କରିବା ପାଇଁ ମାନବ ଇତିହାସରେ ସର୍ବାଧିକ ଗବେଷକ ଏଯାବତ ସର୍ବାଧିକ ସମୟ ଦେଇଛନ୍ତି । ଏ ପର୍ଯ୍ୟନ୍ତ ମିଳୁଥିବା ବିଭିନ୍ନ ଲେଖା ମଧ୍ୟରୁ ଅନେକ ତାଙ୍କ ନାମରେ ଲିଖିତ ହୋଇଥିଲେହେଁ ତନ୍ମଧ୍ୟରୁ କେତେକ ପ୍ରକୃତରେ ତାଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟରେ ରଚିତ । ଖୁବ୍ ନିକଟରେ ଏକ ପ୍ରକାଶନ ସଂସ୍ଥା ହିପୋକ୍ରେଟିସଙ୍କ ଖାସ୍ ରଚନାବଳୀ ନାମକ ଏକ ପୁସ୍ତକ ପ୍ରକାଶ କରିଛନ୍ତି । ତହିଁରେ ବିଭିନ୍ନ ପର୍ବ ମଧ୍ୟରେ ପ୍ରାଗ୍‌ଜ୍ଞାନ ସଂହିତା ନୀତି ବିଜ୍ଞାନ, ମହାମାରୀ ଉପାଖ୍ୟାନ ପ୍ରଥମ ଓ ତୃତୀୟ ଖଣ୍ଡ, ଖର ରୋଗ ବିଧାନ, ବାୟୁ, ଜଳ ଓ ସ୍ଥାନ ସମ୍ବନ୍ଧୀୟ ସୂତ୍ର, ଅସ୍ଥିଭଙ୍ଗ ପ୍ରସଙ୍ଗ, ମସ୍ତକର କ୍ଷତ ପ୍ରସଙ୍ଗ ଏବଂ ଶେଷରେ ଆୟୁର୍ବିଜ୍ଞାନର ବିଧି ବିଧାନ ଏବଂ ଚିକିତ୍ସକର ଶପଥ ଅନ୍ୟତମ ।

ହିପୋକ୍ରେଟିସ୍ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ଆୟୁର୍ବିଜ୍ଞାନକୁ ଦର୍ଶନଶାସ୍ତ୍ରଠାରୁ ପୃଥକ କରି ରୋଗୀକୁ କେବଳ ଏକ ଉତ୍ସର୍ଗୀକୃତ ଚିକିତ୍ସକ

ଭାବେ ବିଚାରକୁ ନେଲେ । ରହସ୍ୟବାଦ ଠାରୁ ଦୂରରେ ରହି ରୋଗୀର ଶଯ୍ୟା ନିକଟକୁ ସେ ଆସିବାକୁ ଚାହିଁଲେ । ପ୍ରତ୍ୟେକ ରୋଗୀକୁ ତନ୍ନ ତନ୍ନ କରି ପରୀକ୍ଷା କରିବା ପାଇଁ ସେ ଉପଦେଶ ଦେଲେ ।

ତାଙ୍କ ମତରେ ଶରୀରରେ ଥିବା ବିଭିନ୍ନ ଦେହ ଦ୍ରବର ଅସନ୍ତୋଳନ ଯୋଗୁଁ ବିଭିନ୍ନ ରୋଗ ଦେଖା ଦେଇଥାଏ । ସେ ରୋଗ ମାନଙ୍କର ଶ୍ରେଣୀ ବିଭାଗ କରି ଏହାକୁ ଖର, ଦୀର୍ଘକାଳିକ, ମହାମାରୀ ଓ ସ୍ଥାନିକ ସଂକ୍ରମଣ, ଏହିପରି ଚାରିଭାଗରେ ବିଭକ୍ତ କରିଥିଲେ । ତାଙ୍କର ବ୍ୟବହାରିକ ଓ ନିଦାନୀୟ ଜ୍ଞାନ ତଥା ପରିସରୀୟ ଜ୍ଞାନ ହିଁ ରୋଗ ନିର୍ଣ୍ଣୟକାରୀ ଯନ୍ତ୍ରପାତି ଭାବେ କାର୍ଯ୍ୟ କରୁଥିଲା ।

ନିଜର ସିଦ୍ଧାନ୍ତ ଗୁଡ଼ିକ ସ୍ୱଚ୍ଛ, ସାବଲୀଳ ତଥା ସାଧୁତା ସହ ଉପସ୍ଥାପିତ କରି ଚିକିତ୍ସକର ମର୍ଯ୍ୟାଦାକୁ ସେ ସମାଜରେ ସର୍ବୋଚ୍ଚ ଶିଖରରେ ପହଞ୍ଚାଇ ପାରିଥିଲେ । ଗ୍ରୀକ୍ ଆୟୁର୍ବିଜ୍ଞାନରେ ପ୍ରଥମ କରି ସେ ଚିକିତ୍ସାଗାର ପ୍ରବର୍ତ୍ତନ କରାଇଲେ । ତାଙ୍କର ରୋଗ ନିର୍ଣ୍ଣୟରେ ହେଉଥିବା ପ୍ରତ୍ୟେକ ଜୟ-ପରାଜୟକୁ ସେ ସ୍ପଷ୍ଟଭାବେ ଲେଖି ରଖିଲେ । ଫଳରେ ସମାଜରେ ତାଙ୍କ ଖ୍ୟାତି ବଢ଼ିବାକୁ ଲାଗିଲା ।

ପ୍ରାୟ ଅଢ଼େଇହଜାର ବର୍ଷ ପୂର୍ବରୁ ସେ ବିଭିନ୍ନ ରୋଗର ଲକ୍ଷଣ ଆଦି ଏତେ ନିର୍ଭୁଲ ଭାବେ ବର୍ଣ୍ଣନା କରିଛନ୍ତି ଜାଣିଲେ ଆଶ୍ଚର୍ଯ୍ୟଲାଗେ । ରୋଗ ନିର୍ଣ୍ଣୟ କରିବା ପାଇଁ ତାଙ୍କ ପାଖରେ ଆଧୁନିକ ଯନ୍ତ୍ରପାତି ଆଦି ନଥିଲେହିଁ ତାଙ୍କର ଏକାଗ୍ରତା ଓ କର୍ତ୍ତବ୍ୟନିଷ୍ଠାହିଁ ତାଙ୍କୁ ସଫଳତା ଆଣି ଦେଉଥିଲା । ଯକ୍ଷ୍ମା, ଅପସ୍ମାର, ବିଭିନ୍ନ ପ୍ରକାରର ଜ୍ୱର, ମାଲେରିଆ ଜ୍ୱର, ନାଳରକ୍ତ ଝାଡ଼ା, ମାନସିକ ବିକାର ଇତ୍ୟାଦିର ପ୍ରାଞ୍ଜଳ ଭାବେ ସେ ବର୍ଣ୍ଣନା କରିଯାଇଛନ୍ତି । କନ୍ଧ ଓ ନିତମ୍ବର ଅସ୍ଥିଭଙ୍ଗ ରେ ତାଙ୍କ ଦ୍ୱାରା ବର୍ଣ୍ଣିତ ଚିକିତ୍ସା ଏପର୍ଯ୍ୟନ୍ତ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଉଛି । ମସ୍ତକର ଅବନିତ ଅସ୍ଥିଭଙ୍ଗରେ ମସ୍ତିଷ୍କ ସଂଆପିତ ହେଲେ ସେଥିପାଇଁ ବର୍ତ୍ତମାନ ଯେଉଁ ଟ୍ରିଫାଇନିଙ୍ଗ ବା ଛିଦ୍ରୀକରଣ ପଦ୍ଧତି ବ୍ୟବହୃତ ହେଉଛି ତାହା ସେ ହଜାର

ହଜାର ବର୍ଷ ପୂର୍ବରୁ ସୂଚିତ କରିଯାଇଛନ୍ତି। ତାଙ୍କଦ୍ୱାରା ପ୍ରଚଳିତ ଅନ୍ୟାନ୍ୟ ଉଲ୍ଲେଖନୀୟ ଚିକିତ୍ସା ଗୁଡ଼ିକ ମଧ୍ୟରେ ପରିଷ୍କାର ଜଳଦ୍ୱାରା କ୍ଷତର ପ୍ରକ୍ଷାଳନ ଅନ୍ୟତମ। ଆଧୁନିକ ନିଦାନ ବିଜ୍ଞାନରେ କ୍ଷତର ପୂରଣ ଦୁଇପ୍ରକାରର ବୋଲି ବର୍ଣ୍ଣନା କରାଯାଇଛି। ସହଜ କ୍ଷତ ପୂରଣ ଓ ସାଙ୍କୁର କ୍ଷତପୂରଣ। ହିପୋକ୍ରେଟିସ୍ ମଧ୍ୟ କ୍ଷତ ପୂରଣ ବିଷୟ ଅବିକଳ ତାହାହିଁ ବର୍ଣ୍ଣନା କରିଛନ୍ତି।

ସେ ବିଶ୍ୱାସ କରୁଥିଲେ ଯେ, ନିର୍ମଳ ବାୟୁ, ପୁଷ୍ଟିକର ଖାଦ୍ୟ, ମାଲିସ୍ ବା ମର୍ଦ୍ଦନ, ଜଳ ଚିକିତ୍ସା ଇତ୍ୟାଦି ଦ୍ୱାରା ପ୍ରାକୃତିକ ଉପାୟରେ ଆରୋଗ୍ୟାୟନ ଲାଭ କରାଯାଇପାରେ। ବିଭିନ୍ନ ଦୂଷିତ ଦେହଦ୍ରବର ବହିଃନିଷ୍କାସନ ମଧ୍ୟ ଆଶୁ ଆରୋଗ୍ୟ ଲାଭ ପାଇଁ ସାହାଯ୍ୟ କରେ।

ତାଙ୍କଦ୍ୱାରା ପ୍ରସ୍ତୁତ ନୀତି ବଚନ ଗୁଡ଼ିକରେ ଏକ ଚିନ୍ତାଶୀଳ ଦାର୍ଶନିକର ସମ୍ବେଦନଶୀଳତା ଓ ଏକ ଅଭିଜ୍ଞ ଆୟୁର୍ବିଜ୍ଞାନବିତ୍‌ଙ୍କର ପ୍ରଗାଢ଼ ପାଣ୍ଡିତ୍ୟର ମଧୁର ମିଶ୍ରଣ ହୋଇଥିଲା। ତାଙ୍କ ଭାଷାରେ ଜୀବନ କ୍ଷଣସ୍ଥାୟୀ କିନ୍ତୁ ବିଦ୍ୟା ଅନନ୍ତ। କ୍ଷଣସ୍ଥାୟୀ ଅଭିଜ୍ଞତା ପ୍ରତାରଣାପୂର୍ଣ୍ଣ। ତେଣୁ ବିଗ୍ରହ ନିଷ୍ପତ୍ତି କଠିନ। ତଥାପି ଚିକିତ୍ସକ କେବଳ ନିଜେ ଠିକ୍ କାମ କରିଦେଲେ ଯଥେଷ୍ଟ ହେବନାହିଁ।- ରୋଗୀ, ତାହାର ପରିଚାରକ ତଥା ଅନ୍ୟ ସମସ୍ତ ସଂପର୍କୀୟ ବ୍ୟକ୍ତିଙ୍କ ସହଯୋଗ ପ୍ରାପ୍ତି ଚିକିତ୍ସକ ପାଇଁ ଅପରିହାର୍ଯ୍ୟ।

ଚିକିତ୍ସକର କର୍ତ୍ତବ୍ୟର ମହନୀୟତା ଓ ଉତ୍କୃଷ୍ଟତା ସହ ତା'ର ଚରିତ୍ରବତ୍ତା ଓ ସାଧୁତାର ନିବିଡ଼ତା ସଂପର୍କରେ ସେ ବାରମ୍ବାର ଚେତାବନୀ ଦେଇଛନ୍ତି। "ଜଣେ ଚିକିତ୍ସକ ରୋଗୀର ଅତୀତ ଇତିହାସ କହିପାରିବାକୁ ସକ୍ଷମ ହେବା ବିଧେୟ, ବର୍ତ୍ତମାନ ଅବସ୍ଥା ବିଷୟରେ ଯଥେଷ୍ଟ ଜାଣିଥିବା ଆବଶ୍ୟକ ଏବଂ ଭବିଷ୍ୟତରେ କ'ଣ ହେବ ତାହା କହିପାରୁଥିବା ଦରକାର। ରୋଗ ଓ ରୋଗୀ ବିଷୟରେ ଦୁଇଟି ବିଶେଷ କଥା ମନେରଖିବାକୁ ହେବ ଯଥା :- ଉପକାର କର ନତୁ କୌଣସି ପ୍ରକାର କ୍ଷତି ସାଧନ କରନାହିଁ। ଚିକିତ୍ସା ବିଦ୍ୟା କେବଳ ତିନିଗୋଟି ଉପାଦାନକୁ ନେଇ ରଚିତ। ଚିକିତ୍ସାଧୀନ ବ୍ୟକ୍ତି, ରୋଗ ଓ ଚିକିତ୍ସକ। ଚିକିତ୍ସାବିଦ୍ୟାର ସେବକ

ଚିକିତ୍ସକ। ରୋଗୀ ଚିକିତ୍ସକର ସହାୟତାରେ ରୋଗ ସହିତ ଯୁଦ୍ଧ କରି ରୋଗମୁକ୍ତ ହୁଏ।"

ଏହି ଯୁଗ ପ୍ରବର୍ତ୍ତକ ମହାତ୍ମା ହିପୋକ୍ରେଟିସ୍ ତାଙ୍କ ସାରାଜୀବନ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ, ଅଧ୍ୟାପନା, ପ୍ରଣୟନ ଆଦି କାର୍ଯ୍ୟରେ ଲିପ୍ତରହି ଥିଲେହେଁ ତା ଭିତରେ ଅନେକ ଦେଶବୁଲି ନିଜ ଜୀବନକାଳ ମଧ୍ୟରେ ଅର୍ଜିତ ଜ୍ଞାନର ପ୍ରଚାର କରିଥିଲେ। ଏଥେନ୍ସ ଠାରେ ଚିକିତ୍ସା ବ୍ୟବସାୟ କରିବା ସମୟ ମଧ୍ୟରେ ସେ ଦେଶର ନାଗରିକତ୍ୱ ଗ୍ରହଣ କରିଥିଲେ। କଥିତ ଅଛି ଯେ ସେ ଥେସାଲି ଠାରେ ପାୟ ଶହେ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ।

ଆୟୁର୍ବିଜ୍ଞାନ ବିଷୟରେ ତାଙ୍କର ଗଭୀର ବିଶ୍ଳେଷଣ ହିଁ ଚିକିତ୍ସା ପ୍ରଣାଳୀକୁ ପ୍ରଥମେ ଦର୍ଶନରୁ ପୃଥକକରି ହେତୁବାଦ ଉପରେ ପ୍ରତିଷ୍ଠିତ କରାଇଲା। ଧର୍ମଗତ କାଳ୍ପନିକ ଉପକଥା ବା ରହସ୍ୟବାଦର ଦୂରରେ ରହି ଚିକିତ୍ସା ଶାସ୍ତ୍ରକୁ ସେ ପ୍ରଥମ କରି ବିଜ୍ଞାନର ରୂପ ଦେଲେ। ତେଣୁ ତାଙ୍କୁ ଚିକିତ୍ସା ବିଜ୍ଞାନର ଜନ୍ମଦାତା ରୂପେ ସମ୍ମାନିତ କରାଯାଏ।

ଆଧୁନିକ ଚିକିତ୍ସା ବିଜ୍ଞାନ ଅଧ୍ୟୟନ କରୁଥିବା ସ୍ନାତକଙ୍କୁ ଚିକିତ୍ସକ ଭାବେ ଅଧିଷ୍ଠିତ ହେବାପୂର୍ବରୁ ଏକ୍ ଶପଥପାଠ କରିବାକୁ ପଡ଼ିଥାଏ। ଏହି ଶପଥଟିର ନାମ 'ହିପୋକ୍ରେଟିକ୍ ଶପଥ'। ଏହା ପରବର୍ତ୍ତୀ କାଳରେ ପିଥାଗୋରାସ୍ଙ୍କ ସ୍କୁଲରୁ ପ୍ରସ୍ତୁତ ହୋଇଥିଲେହେଁ ହିପୋକ୍ରେଟିସ ପ୍ରଦର୍ଶିତ ବିଭିନ୍ନ ନୀତିମାର୍ଗରୁ ଏହା ସଂକଳିତ ହୋଇଥିବା ଯୋଗୁ ତାଙ୍କ ନାମାନୁସାରେ ଏହାର ନାମକରଣ ହୋଇଛି।

ଗ୍ରୀସ ଦେଶର କସ ଦ୍ୱୀପରେ ଏକ କ୍ଷୁଦ୍ରଗ୍ରାମ। ସେଇଠିଁ ହିପୋକ୍ରେଟିସଙ୍କ ସାଧନାପୀଠ। ଏବେ ମଧ୍ୟ ବୁଢ଼ା ବରଗଛ ମୂଳେ ଦରଭଙ୍ଗା ମଣ୍ଡପଟିଏ ହିପୋକ୍ରେଟିସଙ୍କ ଅସାଧାରଣ ପାଣ୍ଡିତ୍ୟରମୂକସାକ୍ଷୀ ହୋଇ ପଡ଼ିରହିଛି। ଏ ମଣ୍ଡପ ଉପରୁ ହିଁ ସେ ତାଙ୍କ ଶିଷ୍ୟ ମାନଙ୍କୁ ଚିକିତ୍ସା ଶାସ୍ତ୍ର

ସମ୍ବନ୍ଧୀୟ ବକ୍ତୃତା ଦେଉଥିଲେ। ଅଦୂରରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ନିର୍ମିତ ଏସ୍କୁଲାପିୟସଙ୍କ ମନ୍ଦିର। ଗ୍ରୀକ୍ ପୌରାଣିକ ମତାନୁଯାୟୀ ଏସ୍କୁଲାପିୟସ ଚିକିତ୍ସା ବିଦ୍ୟାର ଦେବତା। ବର୍ତ୍ତମାନ ମଧ୍ୟ ଏହି ମନ୍ଦିରଟିର ଭଗ୍ନାଂଶ ଏକ ପ୍ରତୀକରୂପେ ଦଣ୍ଡାୟମାନ।

ହିପୋକ୍ରେଟିସ୍‌ଙ୍କ କର୍ମପରିସର ଏତେ ବ୍ୟାପ୍ତ ତଥା ତାଙ୍କ ବିଷୟରେ ଏତେ ଗବେଷଣା କରାଯାଇଛି ଯେ, ପ୍ରତିଦିନ ନୂତନ ତଥ୍ୟମାନ ଆତ୍ମପ୍ରକାଶ କରୁଅଛି। ୧୯୪୦ ମସିହାରେ ସମ୍ରାଟ ଶାସନ କାଳର ରୋମ୍ ସାମ୍ରାଜ୍ୟର ଅଷ୍ଟିଆ ଆଣ୍ଟିକା ନାମକ ପୋତାଶ୍ରୟ ନିକଟରୁ ମାର୍ବଲ ନିର୍ମିତ ତାଙ୍କର ଏକ ଆବକ୍ଷ ପ୍ରତିମୂର୍ତ୍ତି ଉଦ୍ଧାର କରାଯାଇଅଛି। ତତ୍‌କାଳୀନ ରୋମ ନଗରୀରେ ହିପୋକ୍ରେଟିସଙ୍କୁ ଯେ ସର୍ବୋଚ୍ଚ ସମ୍ମାନ ଦିଆଯାଉଥିଲା ସନ୍ଦେହ ନାହିଁ।

ପ୍ରତ୍ୟେକ ଚିକିତ୍ସକ ସ୍ନାତକ ଉପାଧି ଗ୍ରହଣ କଲାବେଳେ ଆୟୁର୍ବିଜ୍ଞାନର ଜନ୍ମଦାତା ଏହି ମହାପୁରୁଷଙ୍କ ନାମରେ ଯେଉଁ ଶପଥ ପାଠ କରିଥାଆନ୍ତି, ପରବର୍ତ୍ତୀ କାଳରେ ତନ୍ମଧ୍ୟରୁ କେତୋଟି ବାକ୍ୟ ସେମାନେ ଯଦି ଆନ୍ତରିକତା ସହିତ ପାଳନ କରିବେ, ହିପୋକ୍ରେଟିସଙ୍କ ଆତ୍ମାକୁ ଶାନ୍ତି ମିଳିପାରିବ।





# ଗାଲେନ୍ ଓ ଗ୍ରୀକ ଚିକିତ୍ସା ଶାସ୍ତ୍ର

୧୩୦ ଖ୍ରୀଷ୍ଟାବ୍ଦ ରୁ ୨୦୦ ଖ୍ରୀଷ୍ଟାବ୍ଦ

ଆୟୁର୍ବିଜ୍ଞାନର କ୍ରମବିକାଶ ଇତିହାସରେ ଯେଉଁ କେତେକ ପ୍ରଖର ପ୍ରତିଭା ଦୃଷ୍ଟିଗୋଚର ହୁଅନ୍ତି ସେମାନଙ୍କ ମଧ୍ୟରେ ହିପୋକ୍ରେଟିସ୍‌ଙ୍କ ସ୍ଥାନ ପ୍ରଥମ

ହେଲେ ତାଙ୍କର ଠିକ୍ ପଛକୁ ଅନ୍ୟ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ହେଉଛନ୍ତି ଗାଲେନ୍ । ଶରୀର ତତ୍ତ୍ୱ, ଆୟୁର୍ବିଜ୍ଞାନ ତଥା ଦର୍ଶନ ଓ ବ୍ୟାକରଣରେ ସେ ଯେତେ ରଚନା କରିଯାଇଛନ୍ତି ତାହାର ଅନ୍ୟତ୍ର ପଟାନ୍ତର ନାହିଁ । ଦୀର୍ଘ ୧୪୦୦ ବର୍ଷକାଳ ତାଙ୍କ ରଚିତ ବୈଜ୍ଞାନିକ ତଥ୍ୟ ନିଜର ଅପ୍ରତିଦ୍ୱନ୍ଦିତା ବଜାୟ ରଖିପାରିଥିଲା । ଅଗଣିତବାର ତାଙ୍କ ରଚିତ ତଥ୍ୟ ଗୁଡ଼ିକରୁ ଉଦ୍ଧୃତାଂଶ ବିଭିନ୍ନ ସ୍ଥାନରେ ବ୍ୟବହୃତ ହୋଇଛି । ପୁରାତନ କାଳରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ କେବଳ ହିପୋକ୍ରେଟିସ୍‌ଙ୍କୁ ବାଦ୍ ଦେଲେ ଅନ୍ୟ କୌଣସି ବ୍ୟକ୍ତିଙ୍କର ତଥ୍ୟ ଏତେ ପ୍ରଭୁତ୍ୱବ୍ୟଞ୍ଜକ ହୋଇପାରିନାହିଁ । ଭେସାଲିଅସ୍ ୧୫୪୩ ମସିହାରେ ତାଙ୍କର ଶରୀର ରଚନା ବିଜ୍ଞାନସମ୍ବନ୍ଧୀୟ ଗ୍ରନ୍ଥ ପ୍ରକାଶ କରିବା ପର୍ଯ୍ୟନ୍ତ ଏବଂ ହାର୍ଭେ ୧୬୨୮ ମସିହାରେ ରକ୍ତ ସଂଚ୍ଚାଳନ ବୈଷୟିକ ପ୍ରାମାଣିକ ତଥ୍ୟ ଦେବା ପର୍ଯ୍ୟନ୍ତ ଗାଲେନ୍ ଅପ୍ରତିଦ୍ୱନ୍ଦୀ ଭାବେ ଶ୍ରେଷ୍ଠତ୍ୱର ଅଧିକାରୀ ଥିଲେ । ତେବେ ଉପରୋକ୍ତ ମହାନ୍ ବ୍ୟକ୍ତିଦ୍ୱୟଙ୍କ ଉଦ୍ଭାବନ ମଧ୍ୟ ଗାଲେନ୍‌ଙ୍କ ଦ୍ୱାରା ପ୍ରସ୍ତୁତ ଭିତ୍ତିଭୂମି ଉପରେ ଦଣ୍ଡାୟମାନ ।

୧୩୦ ଖ୍ରୀଷ୍ଟାବ୍ଦରେ ତୁର୍କୀର ସ୍ମିର୍ଣ୍ଣା ସହରର ଉତ୍ତର ଦିଗରେ ପ୍ରାୟ ୫୦ ମାଇଲ ଦୂରବର୍ତ୍ତୀ ପର୍ଗାମମ୍‌ଠାରେ ନିକନ୍‌ଙ୍କ ଔରସରୁ ସେ ଜନ୍ମ ଗ୍ରହଣ କରିଥିଲେ । ପିତା ଏକ କୁଶଳୀ ସ୍ଥପତି ଥିଲେ । ପିତାଙ୍କ ଇଛା ଅନୁସାରେ ଏସ୍କୁଲିପିଅସ୍ ଦେବତାଙ୍କ ମନ୍ଦିର ମଧ୍ୟରେ ଗାଲେନ୍‌ଙ୍କର ବିଦ୍ୟାଳୟ ହେଲା । ଗଣିତ, ଦର୍ଶନ, ତର୍କଶାସ୍ତ୍ର ଇତ୍ୟାଦିରେ ପ୍ରାରମ୍ଭିକ ଜ୍ଞାନ ଲାଭପରେ ସେ ଆୟୁର୍ବିଜ୍ଞାନରେ ମନୋନିବେଶ କଲେ । ପ୍ରକାଶ ଥାଉକି ପୁରାତନ ଗ୍ରୀସ୍‌ରେ ଏସ୍କୁଲିପିଅସଙ୍କୁ ରୋଗଉପଶମକାରୀ ଦେବତା ରୂପେ ପୂଜା କରାଯାଉଥିଲା । ତେଣୁ କଥିତ ଅଛି ଯେ, ତାଙ୍କ ପିତାଙ୍କୁ ହୋଇଥିବା ସ୍ୱପ୍ନାଦେଶ ଅନୁସାରେ ଗାଲେନ୍‌ଙ୍କୁ ଆୟୁର୍ବିଜ୍ଞାନ ଛାତ୍ର ହେବାକୁ ପଡ଼ିଥିଲା । ତାଙ୍କ ପିତାଙ୍କ ମୃତ୍ୟୁପରେ ସେ ବିଶେଷକରି ଶରୀର ରଚନା ବିଜ୍ଞାନରେ ଅଧିକ ମନୋନିବେଶ କଲେ । ପ୍ରଥମେ ସ୍ମିର୍ଣ୍ଣାର ପେଲୋପ ଓ ପରେ ଗ୍ରୀସ୍‌ର ନୂତନ ରାଜଧାନୀ କରିନ୍ଥ ଠାରେ ଏବଂ ଶେଷରେ ଆଲେକଜାଣ୍ଡ୍ରିଆରେ ସେ ଶରୀର ଶାସ୍ତ୍ର ପଠନ ଶେଷକଲେ । ଏହି ବିଶ୍ୱବିଦ୍ୟାଳୟରୁ ଇଉକ୍ଲିଡ୍, ଆର୍କିମିଡ଼ିସ୍ ଓ ଟୋଲେମୀଙ୍କ ପରି ବିଶ୍ୱବିଖ୍ୟାତ ବ୍ୟକ୍ତିମାନେ ଶିକ୍ଷା ଲାଭ କରିଥିଲେ । ତାଙ୍କୁ ୩୦ ବର୍ଷ

ହେବା ପୂର୍ବରୁ ସେ ପର୍ଗାମମ୍ ଆସି ସେଠାରେ ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ । ତେବେ ଶରୀର ତତ୍ତ୍ୱ, ଶାରୀର ଓ ଆୟୁର୍ବିଜ୍ଞାନ ପ୍ରତି ତାଙ୍କର ବିଶେଷ ଆଗ୍ରହ ରହିଥିଲା ।

ସେକାଳର ସଭ୍ୟ ଜଗତର ରାଜଧାନୀ ଥିଲା ରୋମ୍ ନଗରୀ । ଗାଲେନ୍ ଆକୃଷ୍ଟ ହୋଇ ସେଠାରେ ପହଞ୍ଚିଲେ । କିନ୍ତୁ ରୋମ୍ ବାସିନ୍ଦାମାନେ ବାହ୍ୟ ଲୋକଙ୍କୁ ସହଜରେ ଗ୍ରହଣ କରିପାରୁନଥିଲେ । ବିଶେଷ କରି ପ୍ରତିଭାବାନ୍ ଲୋକମାନଙ୍କ ପ୍ରତି ସେମାନେ ଅଧିକ ଶତ୍ରୁଭାବାପନ୍ନ ହେଉଥିଲେ । ଫଳରେ ଗାଲେନ୍ ଏକ ମାରାତ୍ମକ ପରିସ୍ଥିତିରେ ପଡ଼ି ପର୍ଗାମମ୍ ଫେରି ଆସିବାକୁ ଚିନ୍ତାକଲେ । କିନ୍ତୁ ଇତି ମଧ୍ୟରେ ରୋମର ସମ୍ରାଟ ମାର୍କସ ଅରେଲିଅସ ତାଙ୍କର ରୋଗ ନିର୍ଣ୍ଣୟ ବିଦ୍ୟାରେ ଥିବା ଅସାଧାରଣ ପ୍ରତିଭା ବିଷୟ ଜାଣିବାକୁ ପାଇଲେ । ଫଳରେ ଗାଲେନ୍‌ଙ୍କୁ ସମ୍ରାଟଙ୍କର ବ୍ୟକ୍ତିଗତ ଚିକିତ୍ସକରୂପେ କାର୍ଯ୍ୟକରିବା ପାଇଁ ଆଦେଶ ଦିଆଗଲା । ଅରେଲିଅସ୍‌ଙ୍କ ଦରବାରରେ ତାଙ୍କର ନିଯୁକ୍ତି ଯେଉଁ ପରିସ୍ଥିତିରେ ହେଲା ତାହା ଜଣେ ଚିକିତ୍ସକର ଆତ୍ମମର୍ଯ୍ୟାଦା ପ୍ରତି ପ୍ରତିକୂଳ ଥିଲା । କିନ୍ତୁ ସେ ଯେତେବେଳେ ପାଞ୍ଚବର୍ଷ ପରେ ସ୍ୱଇଚ୍ଛାରେ ନିଜ ପଦବୀ ତ୍ୟାଗକରି ଗୃହାଭିମୁଖୀ ହେଲେ ସେତେବେଳେ ଯଶ, ଗୌରବ ଓ ଅର୍ଥ ତାଙ୍କ ପାଦତଳେ ଲୋଟି ପଡୁଥିଲା । ସେ ପର୍ଗାମମ୍ ଫେରିଆସିବା ପରେ ଅରେଲିଅସ୍‌ଙ୍କୁ ତାଙ୍କର ଅନୁପସ୍ଥିତି ଅସହ୍ୟ ବୋଧହେଲା । ଏବଂ ଶେଷରେ ତାଙ୍କ ଅନୁରୋଧ ରକ୍ଷାକରି ଗାଲେନ୍ ରୋମ୍‌କୁ ପୁନର୍ବାର ଆଗମନ କଲେ । ତାଙ୍କ ଜୀବନର ଶେଷ ତିରିଶ ବର୍ଷ କାଳ ଏହି ନଗରୀରେ ଚିକିତ୍ସା ଶାସ୍ତ୍ର ଅଭ୍ୟାସ କରିବା ସହ ବିଭିନ୍ନ ପୁସ୍ତକମାନ ରଚନା କରିଥିଲେ ।

ତାଙ୍କଦ୍ୱାରା ରଚିତ ବିଭିନ୍ନ ଶାସ୍ତ୍ର ଗ୍ରୀସ୍ ଭାଷାରୁ ପରେ ଆରବୀୟ ଓ ଲାଟିନ୍ ଆଦି ଭାଷାକୁ ଅନୁଦିତ ହୋଇଛି । ନିକଟରେ ତାଙ୍କ ଗ୍ରନ୍ଥ ସଂଖ୍ୟା ଏକ ରୁ ଆଠ, ଗ୍ରନ୍ଥ ସଂଖ୍ୟା ପନ୍ଦର ଏବଂ ଶରୀର ରଚନା ବିଜ୍ଞାନ ପୁସ୍ତକର ପ୍ରଥମ - ପାଞ୍ଚ ଅଧ୍ୟାୟ ଅନୁଦିତ ହୋଇ ପ୍ରକାଶିତ ହୋଇଛି । ପରବର୍ତ୍ତୀ କାଳରେ ଭେସାଲିଅସ୍‌ଙ୍କ ପରି ମହାନ୍ ବୈଜ୍ଞାନିକ ତାଙ୍କ ପ୍ରଦତ୍ତ ସାରଗର୍ଭକ

ଭାପଣ ଗୁଡ଼ିକର ଲିଖିତ ଅନୁଲିପି ପାଠ କରି ତାଙ୍କ ପ୍ରସିଦ୍ଧ ଗ୍ରନ୍ଥ 'ଡି ଫାବ୍ରିକା' ରଚନା କରିଛନ୍ତି ।

ଗଣିତ, ଦର୍ଶନ, ତର୍କଶାସ୍ତ୍ର ଇତ୍ୟାଦି ବିଷୟରେ ଗାଲେନ୍ ପ୍ରାୟ ୧୨୫ ଖଣ୍ଡ ପୁସ୍ତକ ରଚନା କରିଥିଲେ । ଆୟୁର୍ବିଜ୍ଞାନ ସମ୍ବନ୍ଧୀୟ ଗ୍ରନ୍ଥ ମାନଙ୍କର ହିସାବ କରିବା ଏକ ଦୁରୂହ ବ୍ୟାପାର । ତେବେ ଜଣାପଡ଼ିଛି ଯେ ଏକ ଅଗ୍ନିକାଣ୍ଡରେ ରୋମର ଶାନ୍ତିମନ୍ଦିର ସହ ତାଙ୍କ ରଚିତ ଅନେକ ପୁସ୍ତକ ଧ୍ୱଂସ ପାଇଗଲା । ତନ୍ମଧ୍ୟରେ ଆୟୁର୍ବିଜ୍ଞାନ ସମ୍ବନ୍ଧୀୟ ୪୩ ଖଣ୍ଡ ପୁସ୍ତକଥିଲା । ତଥାପି ତାଙ୍କ ରଚିତ ୮୨ ଖଣ୍ଡ ପୁସ୍ତକ ଏବେ ମିଳୁଅଛି ।

ଗାଲେନ୍‌ଙ୍କ ପ୍ରବର୍ତ୍ତିତ ଔଷଧ ପ୍ରସ୍ତୁତି 'ଗାଲେମିକାଲ୍‌ସ୍' ନାମରେ ପରିଚିତ । ବିଭିନ୍ନ ବୃକ୍ଷଲତାଦିର ବ୍ୟବହାର କରି ସେ ଔଷଧ ପ୍ରସ୍ତୁତ କରୁଥିଲେ । ତାଙ୍କ ଦ୍ୱାରା ରଚିତ ନିଦାନ ବିଜ୍ଞାନରେ ସେ ଚାରି ପ୍ରକାରର ଦେହଦ୍ରବକୁ ଆଧାର କରି ସମସ୍ତ ରୋଗର ଲକ୍ଷଣାଦି ବର୍ଣ୍ଣନା କରିଛନ୍ତି । ହିପୋକ୍ରେଟିସଙ୍କ ଦ୍ୱାରା ଏ ଦିଗରେ ପ୍ରଭାବିତ ହୋଇଥିଲେ ହେଁ ରକ୍ତ, କଫ ପୀତ ଓ କୃଷ୍ଣ ପିତ୍ତର ପ୍ରଭାବ, ସେ ଅଧିକ ସ୍ପଷ୍ଟ କରିଦେଇଛନ୍ତି । ତାଙ୍କ ମତରେ ଯକୃତ ଶରୀରର ସୃଷ୍ଟି, ବୃଦ୍ଧି ଏବଂ ପୁଷ୍ଟି ପାଇଁ, ହୃତ୍‌ପିଣ୍ଡ ଉତ୍ତାପର ଉତ୍ପତ୍ତି ଏବଂ ଅପସାରଣ ପାଇଁ ତଥା ମସ୍ତିଷ୍କ ସଂବେଦନ ଓ ଗତିଶୀଳତା ପାଇଁ ଉଦ୍ଦିଷ୍ଟ । ଭାରତୀୟ ଭେଷଜ ଶାସ୍ତ୍ରପରି ସେ ମଧ୍ୟ ମହାଭୂତରେ ବିଶ୍ୱାସ କରୁଥିଲେ । ସେ କିନ୍ତୁ ଶରୀରର ଗଠନରେ ଅଗ୍ନି, ଜଳ, ବାୟୁ ଏବଂ ମୃତ୍ତିକା ଏହି ୪ଟି ମୌଳିକ ଉପାଦନର ବର୍ଣ୍ଣନା କରିଛନ୍ତି । ତାଙ୍କ ମତାନୁସାରେ ଶରୀର ମଧ୍ୟରେ ଏହି ଉପାଦାନ ମାନଙ୍କର ସନ୍ତୋଳନ ହିଁ ଉତ୍ତମ ସ୍ୱାସ୍ଥ୍ୟର ଲକ୍ଷଣ । ସେଥିରେ ବିଶୃଙ୍ଖଳା ଘଟିଲେ ରୋଗର ଉତ୍ପତ୍ତି ।

ଶରୀର ତତ୍ତ୍ୱ ବର୍ଣ୍ଣନା ମଧ୍ୟରେ ଅନେକ କ୍ଷେତ୍ରରେ ତାଙ୍କ ଅସାଧାରଣ ପ୍ରତିଭାର ସ୍ୱାକ୍ଷର ମିଳୁଥିଲେ ହେଁ, କେତେକ କ୍ଷେତ୍ରରେ ସେ ଭୁଲ ତଥ୍ୟ ପରିବେଷଣ କରିଛନ୍ତି । ହୃତ୍‌ପିଣ୍ଡ, ଧମନୀ, ଶିରା ପ୍ରକୁଞ୍ଚନ ଓ ହୃତ୍ ଶିଥିଳନ ସମସ୍ତ ବିଷୟ ସେ ବର୍ଣ୍ଣନା କରିଛନ୍ତି ସତ କିନ୍ତୁ ଧମନୀରେ କେବଳ ରକ୍ତ ନୁହେଁ ବରଂ ରକ୍ତ ଓ ବାୟୁ ପ୍ରବାହିତ ହୁଏ ତଥା ପ୍ରକୁଞ୍ଚନକୁ ଏକ

ନିଷ୍କ୍ରିୟ ଏବଂ ହଦ୍‌ଶିଥିଳନକୁ କ୍ରିୟାଶୀଳ ପଦ୍ଧତି ବୋଲି ସେ ବର୍ଣ୍ଣନା କରିଛନ୍ତି । ତାଙ୍କର ସମସ୍ତ ରଚନା ମଧ୍ୟରେ ବୋଧହୁଏ ଏ ପ୍ରକାର ଭ୍ରମ ଅନ୍ୟ କେଉଁଠାରେ ଦେଖିବାକୁ ମିଳେନାହିଁ ।

ସ୍ନାୟୁବିଜ୍ଞାନରେ ତାଙ୍କ ଅଧ୍ୟୟନ ଓ ଚିନ୍ତନ ପ୍ରଖର ଥିଲା । ମାଂଶପେଶୀ ମାନଙ୍କର ବର୍ଣ୍ଣନା, ସ୍ନାୟୁର ପ୍ରଭାବରେ ମାଂସପେଶୀର ସଙ୍କୁଚନ ତଥା ସୁଷୁମ୍ନାକାଣ୍ଡର ସଂଗ୍ରପ ବା ଛେଦନ ଫଳରେ ହେଉଥିବା ଅଚଳନ, ସ୍ୱର ଯନ୍ତ୍ର ସ୍ନାୟୁ ଆଘାତରେ ହେଉଥିବା ବାକ୍‌ଶକ୍ତିହୀନତା ପ୍ରଭୃତି ତାଙ୍କ ଦ୍ୱାରା ବହୁପୂର୍ବରୁ ବର୍ଣ୍ଣିତ ହୋଇଛି ।

ଗାଲେନ୍‌ଙ୍କ ସମୟରେ ଶବ ବ୍ୟବଚ୍ଛେଦ ପାଇଁ ଅନୁମତି ମିଳୁନଥିଲା । ମଣିଷର ଶବକୁ ବ୍ୟବଚ୍ଛେଦ କରିବାରେ ଧାର୍ମିକ ପ୍ରତିବନ୍ଧ ରହିଥିଲା । ଅକସ୍ମାତ୍ ଯଦି କ୍ରୀତଦାସ କିମ୍ବା ଯୁଦ୍ଧରେ ମରିଥିବା ଶତ୍ରୁପକ୍ଷର କୌଣସି ଶବ ମିଳିଯାଏ, ତେବେ ତାହାକୁ ସେ ଗୋପନରେ ବ୍ୟବଚ୍ଛେଦ ପାଇଁ ବ୍ୟବହାର କରୁଥିଲେ ।

ତାଙ୍କ ରଚିତ 'ଡି ଟେମ୍ପେରାମେଣ୍ଟସ୍' ରେ ସେ ବିଭିନ୍ନ ବିଷର ପ୍ରଭାବ ବର୍ଣ୍ଣନା କରିଛନ୍ତି । ଜଳାତଙ୍କ ରୋଗରେ ପୀଡ଼ିତ କୁକୁରର କିମ୍ବା ବିଷାକ୍ତ ସର୍ପର ବିଷକୁ ଚର୍ମ ଉପରେ ପକାଇଲେ କୌଣସି କ୍ଷତି ହେବନାହିଁ । ସେହି ବିଷକୁ ଭକ୍ଷଣ କଲେ ମଧ୍ୟ ବିଷ ପ୍ରକିୟା ହୁଏନାହିଁ । କିନ୍ତୁ ଆହୁତ ବା ଭଗ୍ନ ଚର୍ମ ଦେଇ ଏହା ରକ୍ତ ମଧ୍ୟରେ ପ୍ରବେଶ କଲେହିଁ ଏହାର ପ୍ରକ୍ରିୟା ଆରମ୍ଭ ହୋଇଥାଏ । ସାପ ଗରଳ ଯଦି ଫଟା ଓଠ, ଦନ୍ତମୂଳରେ ଥିବା କ୍ଷତ କିମ୍ବା ପାକସ୍ଥଳୀରେ ଥିବା ଘା- ସଂସ୍ପର୍ଶରେ ଆସେ, ତେବେ ଏହା ବିପଦପୂର୍ଣ୍ଣ ହୁଏ ।

ତାଙ୍କ ଦ୍ୱାରା ପ୍ରବର୍ତ୍ତିତ ଭେଦାତ୍ମକ ରୋଗ ନିର୍ଣ୍ଣୟ ଆଜି ମଧ୍ୟ ବିଜ୍ଞାନ ଜଗତରେ ସମାଦୃତ । କାମଳ ଏକ ରୋଗନୁହେଁ, ଏକ ଲକ୍ଷଣ । ଏହା ଗାଲେନ୍ ହିଁ ପ୍ରଥମେ ସିଦ୍ଧ କରିଥିଲେ । ବୃକକ୍ ଅଶ୍ମରୀ ଏବଂ ଆଣ୍ଠୁଗଣ୍ଠି ବାତର ପରସ୍ପର ସମ୍ପର୍କ ଥିବାର ସନ୍ଦେହ ସେ ପ୍ରକାଶ କରିଥିଲେ । ବଥ ବା ବଦ୍ରିଥର ଚିକିତ୍ସା ପାଇଁ ସେ ଛେଦନ ଓ ନିଷ୍କାସନ ପ୍ରକ୍ରିୟାର ପ୍ରଚଳନ

କରିଥିଲେ। ଅଫିମର ବ୍ୟବହାର ଖୁବ୍ ସତର୍କତାର ସହିତ କରିବା ଆବଶ୍ୟକ ବୋଲି ସେ ମତ ଦେଇଥିଲେ।

ରୋଗ ନିର୍ଣ୍ଣୟ ପାଇଁ ରୋଗୀକୁ ପରୀକ୍ଷା କରିବାର ଶୈଳୀ ବିଷୟରେ ଗାଲେନ୍‌ଙ୍କ ମତାମତ ବୋଧହୁଏ ଅଧିକାଂଶ ମାତ୍ରାରେ ଆଜିଯାଏ ଅପରିବର୍ତ୍ତିତ ରହିଛି। ରୋଗୀର ପୂର୍ବ ଇତିହାସ, ତା'ର ବ୍ୟକ୍ତିଗତ ଅଭ୍ୟାସ, ତା'ର ବ୍ୟବସାୟ, ତାର ସମ୍ପର୍କୀୟ ମାନଙ୍କ ବିଷୟ, କୌଣସି ସଂକ୍ରାମକ ରୋଗ ବ୍ୟାପିଥିବା ଅଞ୍ଚଳ ସହିତ ରୋଗୀର ସମ୍ବନ୍ଧ ଇତ୍ୟାଦି ପ୍ରଶ୍ନ ମାଧ୍ୟମରେ ଜାଣିବାକୁ ପଡ଼ିବ। ଚର୍ମର ପରିସ୍ପର୍ଶନ ସାହଯ୍ୟରେ ଜ୍ୱର ଇତ୍ୟାଦି ଜାଣିବାକୁ ହେବ। ନିରୀକ୍ଷଣ ଦ୍ୱାରା କାମଳ, ରକ୍ତହୀନତା, ଅଚଳନ, ଦୁର୍ବଳତା ଆଦି ଜାଣିବାକୁ ହେବ।

ଏହା ବ୍ୟତୀତ ରୋଗୀର ନାଡ଼ି ସ୍ପନ୍ଦନର ପରୀକ୍ଷା ଏବଂ ମଳ ମୂତ୍ର, କଫ ଓ ରକ୍ତ ଆଦି ପରୀକ୍ଷା କରି ରୋଗର ନିର୍ଣ୍ଣୟ କରିବାକୁ ହେବ। ଉପରୋକ୍ତ ପ୍ରତ୍ୟେକଟି ବିଧାନ ପୂର୍ବବତ୍ ଆଜିବି ଅନୁସୃତ ହେଉଛି।

ଗାଲେନ୍‌ଙ୍କ ମହାନତା ବର୍ଣ୍ଣନା କରିବା ଏକ ପ୍ରକାର ଦୁରୁହ। ତାଙ୍କ ପୂର୍ବରୁ ବା ପରେ ଅନ୍ୟ କୌଣସି ଚିକିତ୍ସାବିତ୍ ଆୟୁର୍ବିଜ୍ଞାନ ଉପରେ ଏତେ ପ୍ରଭାବ ବିସ୍ତାର କରିପାରିନାହାନ୍ତି। ଶରୀର, ଶରୀର ତତ୍ତ୍ୱ, ନିଦାନ ବିଦ୍ୟା, ଔଷଧ ପ୍ରସ୍ତୁତ ପ୍ରଣାଳୀ, ଶଲ୍ୟ ଚିକିତ୍ସା, ସ୍ୱାସ୍ଥ୍ୟରକ୍ଷା ଓ ଆୟୁର୍ବିଜ୍ଞାନ ଇତିହାସ ଆଦି ପ୍ରତ୍ୟେକ ବିଭାଗରେ ତାଙ୍କ ରଚନାବଳୀ ଆୟୁବିଜ୍ଞାନର ସର୍ବ ବୃହତ୍ ଜ୍ଞାନକୋଷ ରୂପେ ବିବେଚିତ ହୋଇଥାଏ। ଏହି ଜ୍ଞାନକୋଷ ଦ୍ୱାଦଶ ଖଣ୍ଡରେ ବିଭାଜିତ। ପ୍ରତ୍ୟେକ ଖଣ୍ଡ ଏକହଜାରରୁ ଅଧିକ ପୃଷ୍ଠା ସମ୍ବଳିତ।

ଗାଲେନ୍‌ଙ୍କୁ ଅଧିକାଂଶ ହିପୋକ୍ରେଟିସ୍‌ଙ୍କ ସହିତ ତୁଳନା କରିଥାନ୍ତି। ଆୟୁର୍ବିଜ୍ଞାନ ଇତିହାସରେ ସେ ଜଣେ ଅସାଧାରଣ ଶକ୍ତି ସମ୍ପନ୍ନ ବ୍ୟକ୍ତି ଏଥିରେ ଦ୍ୱିମତ ନାହିଁ।





# ଆଣ୍ଡ୍ରିଆସ୍ ଭେସାଲିଅସ୍ ଓ ଶରୀର ରଚନା ବିଜ୍ଞାନ

୧୫୧୪-୧୫୬୪ ଖ୍ରୀଷ୍ଟାବ୍ଦ

ଅନେକ ଯୁଗରେ ମଣିଷ ମନରେ ଥିବା ଧର୍ମାନ୍ଧତା ସଭ୍ୟତାର ପ୍ରଗତି ପଥରେ ଅନ୍ତରାୟ ହୋଇଛି । ପ୍ରାଚୀନ କାଳରେ କେବଳ ଖ୍ରୀଷ୍ଟିଧର୍ମ ନୁହେଁ ପ୍ରାୟ ପ୍ରତ୍ୟେକ ଦେଶରେ ଓ ପ୍ରତ୍ୟେକ ଧର୍ମରେ ଧର୍ମଯାଜକ ମାନେ ଶବ ବ୍ୟବଚ୍ଛେଦକୁ ଧର୍ମ ବିରୋଧୀ ବୋଲି ଅଭିହିତ କରିଥିଲେ । ତେଣୁ

ସେ କାଳରେ ମଣିଷ ଶରୀର ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିବା ଦୁରୁହ ଥିଲା । ଧୀରେ ଧୀରେ ବିଭିନ୍ନ ଅନୁକୂଳ ପରିସ୍ଥିତିର ସୁଯୋଗ ନେଇ ଶାରୀର ଓ ଶରୀର ତତ୍ତ୍ୱବିତ୍ ମାନେ ଗୋପନୀୟ ଭାବେ ଶବ ବ୍ୟବଚ୍ଛେଦ କରିବା ଫଳରେ ଶରୀର ବିଷୟରେ ନୂତନ ତଥ୍ୟମାନ ଆବିଷ୍କୃତ ହେଲା । ତଥାପି ଷୋଡ଼ଶ ଶତାବ୍ଦୀର ଆଦ୍ୟଭାଗ ପର୍ଯ୍ୟନ୍ତ ଏହି କାର୍ଯ୍ୟ କରୁଥିବା ବ୍ୟକ୍ତି ମାନଙ୍କୁ ସାମାଜିକ ପ୍ରତିଷ୍ଠା ମିଳିବା ତ ଦୂରର କଥା ସମୟେ ସମୟେ କଠିନ ଶାସ୍ତି ମଧ୍ୟ ମିଳୁଥିଲା । ଏପରିକି କେତେକ ବୈଜ୍ଞାନିକଙ୍କୁ ବିଷଦେଇ ହତ୍ୟା କରାଯାଇଛି ଏବଂ ଆଉ କେତେକଙ୍କୁ ସର୍ବସାଧାରଣଙ୍କ ସମ୍ମୁଖରେ ଜୀବନ୍ତ ଦଗ୍ଧ କରାଯାଇଥିବାର ପ୍ରମାଣ ଅଛି ।

ଇତିହାସରେ ପ୍ରଥମକରି ଯେଉଁ ବ୍ୟକ୍ତି ଶରୀର ରଚନା ବିଜ୍ଞାନକୁ ସଭ୍ୟ ଜଗତରେ ଆଦୃତ କରାଇ ପାରିଥିଲେ ତାଙ୍କ ନାମ ଆଣ୍ଡ୍ରିଆସ୍ ଭେସାଲିଅସ୍ । ତାଙ୍କର ଜନ୍ମ ୧୫୧୪ ମସିହାରେ ହୋଇଥିଲା । ପିଲାଦିନୁ ସେ ନିଜ ପ୍ରଖର ପ୍ରତିଭାର ପରିଚୟ ଦେଇଥିଲେ । ବାଲ୍ୟକାଳରୁ ଶରୀର ରଚନା ବିଜ୍ଞାନରେ ତାଙ୍କର ଆଗ୍ରହ ଥିଲା । ତେଣୁ ଏହି ବିଜ୍ଞାନ ସମ୍ବନ୍ଧୀୟ ପ୍ରଥମ ଶିକ୍ଷା ପ୍ୟାରୀସ୍‌ରୁ ଲାଭ କଲାପରେ ଲୋଭେନ୍ ବିଶ୍ୱ ବିଦ୍ୟାଳୟରୁ ସେ ସ୍ନାତକ ଓ ଉଚ୍ଚତର ଡିଗ୍ରୀ ହାସଲ କଲେ ।

ଭେସାଲିଅସ୍‌ଙ୍କ ଅଧ୍ୟାପକ ଜାକୋବସ୍ ସିଲ୍‌ଭିଅସ୍ ଜଣେ ଗାଲେନ୍ ମତାବଲମ୍ବୀ ଥିଲେ । ତେଣୁ ଗାଲେନ୍‌ଙ୍କ ରଚିତ ପ୍ରତ୍ୟେକଟି ତଥ୍ୟ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିବା ସ୍ୱାଭାବିକ । କିନ୍ତୁ ପ୍ରଥମ ଥର ପାଇଁ ଯେତେବେଳେ ଭେସାଲିଅସ୍ ଗାଲେନ୍‌ଙ୍କ ମତାମତ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ, ତାହାଶୁଣି ସିଲ୍‌ଭିଅସ୍ କମ୍ପିଉଠିଲେ ।

ଭେସାଲିଅସଙ୍କ ପ୍ରତିଭା ଅତୁଳନୀୟ ଥିଲା । ତେଣୁ ମାତ୍ର ୨୫ ବର୍ଷ ବୟସରେ ସେ ପାଦୁଆ ଭଳି ବିଶ୍ୱବିଖ୍ୟାତ ବିଶ୍ୱବିଦ୍ୟାଳୟରେ ଶରୀର ରଚନା ବିଜ୍ଞାନର ବିଭାଗୀୟ ମୁଖ୍ୟଭାବେ ଦାୟିତ୍ୱ ଗ୍ରହଣ କଲେ ।

ସେତେବେଳେ କେନ୍ଦ୍ରୀୟ ୟୁରୋପର ସମସ୍ତ ଗବେଷକ ଏହି ବିଶ୍ୱବିଦ୍ୟାଳୟ ପ୍ରତି ଆକୃଷ୍ଟ ହୋଇଥିଲେ। ପଦଭାର ସମ୍ଭାଳିବାର ମାତ୍ର ଏକବର୍ଷ ମଧ୍ୟରେ ସେ "ଟାବୁଲି ଆନାଟମିକ ସେକ୍‌ସ" ନାମକ ଯୁଗାନ୍ତକାରୀ ପୁସ୍ତକ ରଚନା କଲେ। ଗାଲେନ୍‌ଙ୍କୁ ସମାଲୋଚନା କରି ସେ କହିଛନ୍ତି ଯେ, ତାଙ୍କର ଲେଖା ସମୂହ କେବଳ ପଶୁପକ୍ଷୀଙ୍କ ବ୍ୟବଚ୍ଛେଦ ଉପରେ ଆଧାରିତ ହୋଇଥିବାରୁ ତ୍ରୁଟିପୂର୍ଣ୍ଣ ହେବା ସ୍ୱାଭାବିକ। ତେଣୁ ମଣିଷର ଶବ ବ୍ୟବଚ୍ଛେଦ ଶରୀର ବିଜ୍ଞାନ ଶିକ୍ଷା ପାଇଁ ଅପରିହାର୍ଯ୍ୟ। କହିବା ବାହୁଲ୍ୟ ଯେ ଇତର ପ୍ରାଣୀ ଓ ମଣିଷର ଶରୀର ଗଠନ ପ୍ରଣାଳୀରେ ହୁଏତ କେତେକ ସ୍ଥଳରେ ସାମଞ୍ଜସ୍ୟ ଥାଇପାରେ କିନ୍ତୁ ପ୍ରଭେଦ ଅଧିକାଂଶ କ୍ଷେତ୍ରରେ ରହିବା ସ୍ୱତଃସିଦ୍ଧ।

ଏହାର ଠିକ୍ ପାଞ୍ଚବର୍ଷପରେ ତାଙ୍କର ଅମର କୃତୀ 'ଡି ଫାବ୍ରିକା ହ୍ୟୁମାନୀ କର୍ପୋରିସ୍' ଆତ୍ମପ୍ରକାଶ କଲା। ଗତ ୧୫୦୦ ବର୍ଷର ଗତାନୁଗତିକ ପଦ୍ଧତିରୁ ବାହାରିଆସି ପ୍ରତ୍ୟକ୍ଷ ଅନୁଭୂତିରୁ ମଣିଷ ଶରୀର ତନ୍ନ ତନ୍ନ ବିଶ୍ଳେଷଣ କରି ସେ ଏହି ପୁସ୍ତକଟିକୁ ବିଜ୍ଞାନର ସମୃଦ୍ଧିପାଇଁ ଉତ୍ସର୍ଗ କଲେ। ଏହି ପୁସ୍ତକରେ ପ୍ରତ୍ୟେକଟି କର୍ମପଦ୍ଧତିର ଚିତ୍ର ଜୋନେସ୍ ଷ୍ଟିଫାନସ୍‌ଙ୍କ ଦ୍ୱାରା ଅଙ୍କିତ ହୋଇଛି। ପ୍ରତ୍ୟେକଟି କାର୍ଯ୍ୟବିଧି ପୁଙ୍ଖାନୁପୁଙ୍ଖ ଭାବେ ବର୍ଣ୍ଣିତ ହୋଇଛି।

ବିଜ୍ଞାନକୁ ସମୃଦ୍ଧ କରିବାପାଇଁ ଭେସାଲିଅସ୍‌ଙ୍କୁ ୧୫୦୦ ବର୍ଷରୁ ଚଳିଆସୁଥିବା ଅନେକ ପଦ୍ଧତିର ବିରୁଦ୍ଧାଚରଣ କରିବାପାଇଁ ପଡ଼ିଥିଲା। ଫଳରେ ତତ୍‌କାଳୀନ ସମାଜର କେତେକ ବଡ଼ପଣ୍ଡାଙ୍କର ସେ ଚକ୍ଷୁଶୂଳ ହୋଇଥିଲେ। ତେବେ ତାଙ୍କ ଉପରେ ପ୍ରଥମ ଆକ୍ରମଣ କଲେ ଏକଦା ତାଙ୍କର ଗୁରୁ ସିଲ୍‌ଭିଅସ୍। ସେ ଦାବୀକଲେ ଯେ ଭେସାଲିଅସ୍ ଲେଖିଥିବା ତଥ୍ୟ ସବୁର ଯଥାର୍ଥତା ଯାହବି ହେଉପଛେ ଏହା ଗାଲେନ୍‌ଙ୍କ ମତ ବିରୋଧୀ। ତେଣୁ ଭେସାଲିଅସ ଜନତା ଦରବାରରେ କ୍ଷମାମାଗି ତାଙ୍କ ତଥ୍ୟକୁ ପ୍ରତ୍ୟାହାର କରିନେବା ଆବଶ୍ୟକ। ଇତି ମଧ୍ୟରେ ଭେସାଲିଅସ୍ ତାଙ୍କ ସପକ୍ଷରେ ପ୍ରବଳ ଜନମତ ସଂଗ୍ରହ କରିସାରିଥିଲେ। ତେଣୁ ସେ ସମସ୍ତ

ପ୍ରତିବାଦକୁ ଭ୍ରୁକ୍ଷେପ କଲେନାହିଁ ଭିସାଲିଅସ୍। ଫଳରେ କର୍ତ୍ତୃପକ୍ଷଙ୍କ ଲୋଲୁପ ଦୃଷ୍ଟି ତାଙ୍କ ଉପରେ ପଡ଼ିଲା। ସେହିଠାରେ ହିଁ ତାଙ୍କ ବୈଜ୍ଞାନିକ କାର୍ଯ୍ୟକଳାପର ପରିସମାପ୍ତି ଘଟିଲା ବୋଲି ବୁଝିବାକୁ ହେବ।

ପାଡୁଆ ବିଶ୍ୱବିଦ୍ୟାଳୟରେ ତାଙ୍କ ଆସନ ହରାଇବା ଯୋଗୁଁ ସେ ଦୁଃଖିତ ନଥିଲେ। କିନ୍ତୁ ତାଙ୍କ ଅଧ୍ୟାପକଙ୍କର ଏହି କୁତ୍ସିତ ଆଚରଣ ତାଙ୍କୁ ବିବ୍ରତ ଓ ମ୍ରିୟମାଣ କରିଦେଇଥିଲା। ତାଙ୍କ ନିକଟରେ ଥିବା ଅନ୍ୟାନ୍ୟ ଅନେକ ପାଣ୍ଡୁଲିପିକୁ ପାଡୁଆ ବିଶ୍ୱବିଦ୍ୟାଳୟର ପବିତ୍ରପୀଠରେ ଅଗ୍ନିରେ ସମର୍ପଣ କରି ସେ ସ୍ଥାନ ପରିତ୍ୟାଗ କଲେ।

ଏହି ସନ୍ଧିକ୍ଷଣରେ ସେ ପୁନର୍ବାର ଜୀବନର ଅର୍ଥ ଖୋଜୁଥିଲେ। ଇତି ମଧ୍ୟରେ ମାଦ୍ରିଦ୍‌ର ସମ୍ରାଟ୍ ଚାର୍ଲସ୍ ଚତୁର୍ଥଙ୍କର ରାଜ ଚିକିତ୍ସକ ଭାବେ ନିଯୁକ୍ତି ପାଇ ସେଠାରେ କିଛି ଦିନ ଅବସ୍ଥାନ କଲାପରେ ତାହା ପରିତ୍ୟାଗ କରି ସେ ପ୍ରାୟଶ୍ଚିତ କରିବାପାଇଁ ଜେରୁଜାଲେମ୍ (ଯୀଶୁଖ୍ରୀଷ୍ଟଙ୍କ ଜନ୍ମସ୍ଥାନ ଓ ଖ୍ରୀଷ୍ଟୀୟାନ୍ ମାନଙ୍କର ତୀର୍ଥସ୍ଥାନ) ଯାତ୍ରାକଲେ।

ସେଠାରୁ ଫେରିବା ରାସ୍ତାରେ ୧୫୬୩ ମସିହାରେ ପାଡୁଆ ଯାଇ ସେଠାରେ ତାଙ୍କ ପ୍ରିୟ ବିଶ୍ୱବିଦ୍ୟାଳୟକୁ ଆଉଥରେ ଦେଖିବାପାଇଁ ଇଚ୍ଛାକଲେ। ସମଗ୍ର ବିଶ୍ୱବିଦ୍ୟାଳୟ ଯେପରି ତାଙ୍କ ପାଦତଳେ ପଡ଼ି କ୍ଷମା ମାଗୁଛି। ବିଶ୍ୱବିଦ୍ୟାଳୟର ସମସ୍ତ ଅନ୍ତେବାସୀଗଣଙ୍କ ଅନୁରୋଧ କ୍ରମେ ସେ ପୁନର୍ବାର ତାଙ୍କ ଆସନ ଅଳଙ୍କୃତ କଲେ। ତାଙ୍କ ଆଗମନରେ ଶରୀର ରଚନା ବିଜ୍ଞାନ ବିଭାଗରେ ଯେପରି ପୁନଃ ପ୍ରାଣ ସଞ୍ଚାରିତ ହେଲା।

କିନ୍ତୁ ସେ ଆଉ ଅଧିକକାଳ ପାଡୁଆରେ ରହିପାରିଲେନାହିଁ। ପୁନଃ ପ୍ରତିଷ୍ଠିତ୍ ହେବାର ପରବର୍ଷ ସେ ୧୫୬୪ ମସିହାରେ ଅବକାଶ ବିନୋଦନ ପାଇଁ ମଧ୍ୟ ସାଗରୀୟ ଜାନ୍ତେ ନାମକ ଏକ ଦ୍ୱୀପରେ ଅବସ୍ଥାନ କରୁଥିଲେ। ସେହି ଅବକାଶ ପରେ ସେ ଆଉ ପାଡୁଆକୁ ଫେରି ଆସିନାହାନ୍ତି। ଏକ ମହାମାରୀରେ ଆକ୍ରାନ୍ତ ହୋଇ ସେ ପ୍ରାଣତ୍ୟାଗ କଲେ।

ଗତାନୁଗତିକତା ବିରୁଦ୍ଧରେ ବୈପ୍ଳବିକ ପରିବର୍ତ୍ତନ ଆଣିବାପାଇଁ ସେ ସ୍ୱର ଉତ୍ତୋଳନ କରିବାଫଳରେ ତତ୍‌କାଳୀନ ସମାଜର ପ୍ରଭାବଶାଳୀ ଗୋଷ୍ଠୀର ଶୀକାର ହୋଇଥିଲେ । ନିଜ ଜୀବଦ୍ଦଶା ମଧ୍ୟରେ ସେଥିପାଇଁ ତାଙ୍କୁ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିଅଛି । ତେବେ ଆୟୁର୍ବିଜ୍ଞାନ ଜଗତରେ 'ଡି ଫ୍ରାବ୍ରିକା ହ୍ୟୁମାନି କର୍ପୋରିସ୍' ତାଙ୍କୁ ଚୀରସ୍ମରଣୀୟ କରାଇପାରିଛି ।





# ଉଇଲିୟମ ହାର୍ଭେ ଓ ରକ୍ତ ସଞ୍ଚାଳନ

୧୫୭୮ - ୧୬୫୭ ଖ୍ରୀଷ୍ଟାବ୍ଦ

ମାନବ ଶରୀର ମଧ୍ୟରେ ରକ୍ତହିଁ ସକଳ ଶକ୍ତିର ଆଧାର । ରକ୍ତ ମାଧ୍ୟମରେ ଅମ୍ଳଜାନ ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ ଯାଇ ତାହାକୁ ଶକ୍ତି ଯୋଗାଏ । ପୁଣି ବିଭିନ୍ନ କୋଷ ଓ ତନ୍ତୁରୁ ଅଙ୍ଗାରକାମ୍ଳ ଜାନ ଦୂଷିତ ରକ୍ତ ମାଧ୍ୟମରେ ଫୁସୁଫୁସ୍‌କୁ ଫେରିଆସେ । ଶରୀର ତତ୍ତ୍ୱରେ ଏହି

ପ୍ରକ୍ରିୟା ଏକ ମହତ୍ୱପୁର୍ଣ୍ଣ ସ୍ଥାନ ଅଧିକାର କରେ। କିନ୍ତୁ ଦୁର୍ଭାଗ୍ୟ ବଶତଃ ପ୍ରାୟ ୧୪୦୦ ମସିହା ପର୍ଯ୍ୟନ୍ତ ମାନବ ସମାଜ ଏ' ବିଷୟରେ କେତେକ ତ୍ରୁଟିପୂର୍ଣ୍ଣ ତଥ୍ୟ ଉପରେ ଆସ୍ଥା ରଖିଥିଲା।

ରକ୍ତ ସଞ୍ଚାଳନ ବିଷୟରେ ଗାଲେନ୍‌ଙ୍କ ଯେଉଁସବୁ ପ୍ରମାଦ ରହିଯାଇଥିଲା, ତାହାକୁ କୌଣସି ବ୍ୟକ୍ତି ସମାଲୋଚନା କରିବାତ ଦୂରର କଥା ପୁନର୍ବାର ପରୀକ୍ଷାକରି ଦେଖିବାର ସାହସ ମଧ୍ୟ କରିନଥିଲେ। କିନ୍ତୁ ଅନେକ ପ୍ରତିବନ୍ଧକ ସତ୍ତ୍ୱେ ଉଇଲିୟମ୍ ହାର୍ଭେ ନାମକ ଜଣେ ସ୍ୱନାମଧନ୍ୟ ଶରୀର ତତ୍ତ୍ୱବିତ୍ ୧୬୨୮ ମସିହାରେ 'ଡି ମୋଟୁ କାଡ଼ିସ୍' ନାମକ ପୁସ୍ତକ ପ୍ରକାଶ କରି ବିଶ୍ୱକୁ ରକ୍ତ ସଞ୍ଚାଳନ ପ୍ରକ୍ରିୟାର ପ୍ରକୃତରୂପ ଜଣାଇଲେ।

"ମଣିଷର ହୃତ୍‌ପିଣ୍ଡ ୪ଟି କୋଠରୀରେ ବିଭକ୍ତ। ଉପରର ଦୁଇ କୋଠରୀକୁ ଅଳିନ୍ଦ ଓ ତଳ ଦୁଇ କୋଠରୀକୁ ନିଳୟ କୁହାଯାଏ। ପ୍ରଥମେ ନିଳୟର ସଙ୍କୁଚନ ଫଳରେ ଏଥିରେ ଥିବା ରକ୍ତ ନିଳୟକୁ ଖ୍ୟଳିଯାଏ। ନିଳୟ ଗୁଡ଼ିକ ରକ୍ତପୂର୍ଣ୍ଣ ହୋଇଗଲେ ହୃତ୍‌ପିଣ୍ଡ ଫୁଲିଯାଏ ଏବଂ ଏହାର ମାଂସପେଶୀ ଦୃଢ଼ ହୋଇ ସଙ୍କୁଚିତ ହୁଏ। ଏସବୁ ହୃତ୍‌ସ୍ପନ୍ଦନ କୁହାଯାଏ। ସ୍ପନ୍ଦନ ଫଳରେ ନିଳୟରୁ ରକ୍ତ ଧମନୀକୁ ଖ୍ୟଳିଯାଏ। ଲକ୍ଷ୍ୟ ରଖିବାକୁ ହେବଯେ, ଦକ୍ଷିଣ ଅଳିନ୍ଦରେ ଦୂଷିତ ବା ଅଙ୍ଗାରକାମ୍ଳ ଜାନ ମିଶ୍ରିତ ରକ୍ତ ଫୁସ୍‌ଫୁସୀୟ ଧମନୀ ଦ୍ୱାରା ଦୁଇ ଫୁସ୍‌ଫୁସ୍‌କୁ ଯାଏ ଏବଂ ବାମ ନିଳୟରୁ ଅମ୍ଳଜାନ ଯୁକ୍ତ ପରିଷ୍କାର ରକ୍ତ ମହାଧମନୀ ଦେଇ ଶରୀରର ବିଭିନ୍ନ ଅଂଶକୁ ଯାଇଥାଏ।"

ହାର୍ଭେଙ୍କ ଦ୍ୱାରା ଏହି ତତ୍ତ୍ୱ ପ୍ରତିଷ୍ଠିତ ହେଲା। ଗାଲେନ୍‌ଙ୍କ ସମୟରେ ମଣିଷର ଶବ ବ୍ୟବଚ୍ଛେଦ ଖ୍ରୀଷ୍ଟିଆନ୍ ଧର୍ମଯାଜକ ମାନେ ବାରଣ କରିଥିବାରୁ ସେ ମୁଖ୍ୟତଃ ପଶୁ ମାନଙ୍କର ଶରୀର ବ୍ୟବଚ୍ଛେଦ କରି ତାଙ୍କର ତତ୍ତ୍ୱ ପ୍ରକାଶିତ କରିଥିଲେ। ତେଣୁ ତାହା ତ୍ରୁଟିପୂର୍ଣ୍ଣ ହେବା ସ୍ୱାଭାବିକ। ହାର୍ଭେ ତାଙ୍କ ପୁସ୍ତକ ମାଧ୍ୟମରେ ପୂର୍ବରୁ ପ୍ରତିଷ୍ଠିତ ସମସ୍ତ ତ୍ରୁଟିପୂର୍ଣ୍ଣ ତଥ୍ୟର ସଂଶୋଧନ କରିବା ଫଳରେ ରକ୍ତ ସଞ୍ଚାଳନ ପ୍ରକ୍ରିୟା ଏକ ନୂତନ ଜନ୍ମ ପାଇଲାଭଳି ଜଣାଗଲା।

ତାଙ୍କ ଦ୍ୱାରା ପ୍ରଣୀତ ଏହି ତଥ୍ୟ ପୂର୍ବରୁ ଥିବା ଅନେକ ଭ୍ରମ ଧାରଣା ଦୂର କରିଦେଲା । ଦକ୍ଷିଣ ନିଳୟରୁ ବାମ ନିଳୟକୁ କୌଣସି ଛିଦ୍ରଯୋଗେ ରକ୍ତ ଯାଏନାହିଁ । ଧମନୀରେ ରକ୍ତ ସହିତ ବାୟୁ ମଧ୍ୟ ଯାତାୟତ କରେନାହିଁ । କିନ୍ତୁ ଦୂଷିତ ରକ୍ତ ଦକ୍ଷିଣ ନିଳୟରୁ ଫୁସ୍‌ଫୁସ୍‌କୁ ଯାଇ ସେଠାରେ ଅଙ୍ଗାରକାମ୍ଳଜାନ ପରିତ୍ୟାଗକରେ ଏବଂ ଅମ୍ଳଜାନ ଗ୍ରହଣ କରି ପୁଣି ଫୁସ୍‌ଫୁସୀୟ ଶିରା ଯୋଗେ ବାମ ଅଳିନ୍ଦ ଓ ପରେ ବାମ ନିଳୟରେ ପ୍ରବେଶ କରି ହୃତପିଣ୍ଡର ପ୍ରକୁଞ୍ଚନ ବେଳେ ମହାଧମନୀ ବାଟ ଦେଇ ଶରୀରର ବିଭିନ୍ନ ଅଂଶକୁ ପ୍ଲାବିତ ହୁଏ ।

ଶରୀର ତତ୍ତ୍ୱ ଉପରେ ଆଧାରିତ ସମସ୍ତ ଗ୍ରନ୍ଥ ମାନଙ୍କ ମଧ୍ୟରେ ହାର୍ଭେଙ୍କ ରଚିତ 'ଡି ମୋଟୁ କାର୍ଡ଼ିସ୍' ସର୍ବ ପ୍ରଧାନ ବୋଲି ଏଯାବତ ବିବେଚିତ ହୋଇଆସିଛି ।

ଏହି ମହାନ୍ ବ୍ୟକ୍ତିତ୍ୱ ଏକ କ୍ଷୁଦ୍ରକୃଷୀ ପରିବାରରେ କେଣ୍ଟ (ଇଂଲଣ୍ଡ)ର ଫୋକ୍‌ଷ୍ଟୋନ୍‌ଠାରେ ୧୫୭୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ୧୫୯୩ ମସିହାରେ କ୍ୟାଣ୍ଟରବରୀ ର କିଙ୍ଗ୍‌ସ୍ ସ୍କୁଲରେ ଅଧ୍ୟୟନ ଆରମ୍ଭ କରି ପରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ କେନ୍‌ସ୍ ସ୍କୁଲ୍‌ରେ ନାମ ଲେଖାଇଲେ । ସେତେବେଳେ ଏହି ଅନୁଷ୍ଠାନରେ ଶରୀର ରଚନା ତତ୍ତ୍ୱ ଏବଂ ଶରୀର ତତ୍ତ୍ୱ ପଠନ ପାଇଁ ଫାଶୀ ପାଉଥିବା ତଥା ଜେଲ୍ ମଧ୍ୟରେ ପ୍ରାଣତ୍ୟାଗ କରୁଥିବା ଅପରାଧୀ ମାନଙ୍କ ଶବ ବ୍ୟବଚ୍ଛେଦ ହେଉଥିଲା । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ୧୫୯୭ ମସିହାରେ ସ୍ନାତକ ହୋଇ ସେ ଉଚ୍ଚତର ଶିକ୍ଷା ପାଇଁ ଫ୍ରାନସ୍ ଓ ଜର୍ମାନୀ ଭ୍ରମଣ କରିସାରି ଶେଷରେ ଶରୀର ରଚନା ବିଜ୍ଞାନ ପାଇଁ ପ୍ରସିଦ୍ଧ ପାଦୁଆ (ଗ୍ରୀସ୍) ରେ ପହଞ୍ଚିଲେ । ତାଙ୍କର ଗଭୀର ଅଧ୍ୟୟନ ଫଳରେ ୧୬୦୨ ମସିହାରେ ସେ କଳା ଓ ଆୟୁର୍ବିଜ୍ଞାନରେ ଡକ୍ଟରେଟ୍ ଉପାଧି ପ୍ରାପ୍ତ ହୋଇ ଲଣ୍ଡନ ପ୍ରତ୍ୟାବର୍ତ୍ତନ କଲେ । ପୁନଶ୍ଚ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଏମ୍ଃ ଡିଃ ଡିଗ୍ରୀ ଲାଭ କରି ସାରିବାପରେ ଶରୀର ରଚନା ବିଜ୍ଞାନ ଓ ଶଲ୍ୟ ଚିକିତ୍ସାରେ ସେ ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ ବାର୍ଥୋଲେମିଉ ହସ୍ପିଟାଲରେ ।

ଏହି ଚିକିତ୍ସାଳୟରେ ତାଙ୍କର ପ୍ରଥମ ବକ୍ତୃତାରେ ପ୍ରମାଣିତ ହୋଇଥିଲା ଯେ, ରକ୍ତ ସଞ୍ଚାଳନ ବିଷୟରେ ସେ କିଛି ମୌଳିକ ଚିନ୍ତାଧାରାର ବାହକ। ତେବେ ୧୬୧୬ ମସିହାରେ ସେ ନିଯୁକ୍ତି ପାଇଥିଲେହେଁ ତାଙ୍କ ବିଗ୍ଧରଧାରାର ତନ୍ନ ତନ୍ନ ଗବେଷଣା କରି ସେ ତାଙ୍କ ଅବିନାଶୀ ପ୍ରବନ୍ଧ ପ୍ରକାଶ କଲେ ଦୀର୍ଘ ୧୨ ବର୍ଷପରେ। ଏହି ନିବନ୍ଧଟି ଲାଟିନ୍ ଭାଷାରେ ପ୍ରକାଶିତ ହୋଇଥିଲା। ଏଥିରେ ବୃହତ୍ତର ଓ କ୍ଷୁଦ୍ରତର ରକ୍ତ ସଞ୍ଚାଳନ କ୍ରିୟାର ବିଶଦ ବିବରଣୀ ପ୍ରଦତ୍ତ ହୋଇଛି।

ତାଙ୍କର ପ୍ରବନ୍ଧ ରଚନା ପାଇଁ ସେ ବିଭିନ୍ନ ପଶୁପକ୍ଷୀ ମାନଙ୍କୁ ବ୍ୟବଚ୍ଛେଦ କରିଥିଲେ। ଏତଦ୍ ବ୍ୟତୀତ ୮୦ ଟି ମାନବ ଶବ ବ୍ୟବଚ୍ଛେଦ ମଧ୍ୟ କରିଥିଲେ। ବିଭିନ୍ନ ରଜ୍ଜୁ ବନ୍ଧନ ଦ୍ୱାରା ଧମନୀର ତଥା ଶିରାର ସଙ୍କୋଚନ କରି ତାହାର ପ୍ରଭାବକୁ ଲେଖି ରଖିଥିଲେ। ହୃତପିଣ୍ଡ, ଏକକ ସମୟରେ, କେତେ ପରିମାଣର ରକ୍ତ ଧମନୀ ଯୋଗେ ଅଙ୍ଗପ୍ରତ୍ୟଙ୍ଗକୁ ପଠାଏ ତାହା ମଧ୍ୟ ସେ ଟିପି ରଖିଥିଲେ। ବିଭିନ୍ନ ପରୀକ୍ଷା ଓ ପର୍ଯ୍ୟବେକ୍ଷଣ ବଳରେ ସେ ତାଙ୍କର ବିଶ୍ୱପ୍ରସିଦ୍ଧ ପ୍ରବନ୍ଧ ରଚନା କରିବାକୁ ସମର୍ଥ ହେଲେ। ତଥାପି ତାଙ୍କ ପ୍ରବନ୍ଧରେ କୈଶିକ ନାଳିକା ବିଷୟରେ କୌଣସି ଉଲ୍ଲେଖ ନଥିବାର ଅନୁଭୂତ ହୁଏ।

ହାର୍ଭେଙ୍କ ପ୍ରତିଭାର ପରିଚୟ ପାଇ ସମ୍ରାଟ୍ ଜେମ୍ସ୍ ପ୍ରଥମେ ତାଙ୍କୁ ଚିକିତ୍ସକ ରୂପେ ଅଭିଷିକ୍ତ କରିଥିଲେ। କିନ୍ତୁ ତାଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଚାର୍ଲସ୍ ପ୍ରଥମ ୧୬୪୫ ମସିହାରେ ତାଙ୍କୁ ସାଧାରଣ ଚିକିତ୍ସକ ସ୍ତରକୁ ଖସାଇ ଦେଇଥିଲେ। ତଥାପି ହାର୍ଭେଙ୍କର ରାଜାନୁବର୍ତ୍ତିତାରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ ପାଇନଥିଲା। ସେହି ବର୍ଷ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ସଭ୍ୟଭାବେ ଗ୍ରହଣ କଲେହେଁ ସେ ରାଜାଙ୍କ ପ୍ରତି ଅନୁଗତ ଥିବାରୁ ତାଙ୍କ ଚିକିତ୍ସା କରିବା ପାଇଁ ବିଶ୍ୱବିଦ୍ୟାଳୟର ସମ୍ମାନକୁ ନମ୍ରଭାବରେ ଆଗ୍ରହ୍ୟ କରିଥିଲେ।

ଦୁର୍ଭାଗ୍ୟକ୍ରମେ ଧୀରେ ଧୀରେ ସେ ନିଜ ଶରୀରରେ ଆଣ୍ଠୁଗଣ୍ଠି ବାତର ପ୍ରଭାବ ଅନୁଭବ କଲେ। ଗଭୀର ଆତ୍ମବିଶ୍ୱାସ ଓ ଗବେଷଣା ପ୍ରତି

ଉତ୍ସର୍ଗୀକୃତ ପ୍ରାଣ ଯୋଗୁଁ ଅନେକ ବର୍ଷ ସେ ଏହି ରୋଗ ସହିତ ଯୁଦ୍ଧ କରିଚାଲିଥିଲେ। ଶେଷରେ ବାର୍ଦ୍ଧକ୍ୟ ଓ ଗଣ୍ଠିବାତର ଦ୍ୱିମୁଖୀ ଆକ୍ରମଣରେ ତାଙ୍କର ପରାଜୟ ଆସନ୍ନ ବୋଲି ଜାଣିପାରିଲେ। ମୃତ୍ୟୁ ପାଖରେ ଆତ୍ମ ସମର୍ପଣ କରିବା ପୂର୍ବରୁ ନିଜର ଗ୍ରନ୍ଥାଗାର ଓ ଆୟୁର୍ବିଜ୍ଞାନ ସମ୍ବନ୍ଧିତ ସଂଗ୍ରହାଳୟର ସମସ୍ତ ପଦାର୍ଥକୁ ରୟାଲ୍ କଲେଜ୍ ଅଫ ଫିଜିସିଆନ୍‌ଙ୍କୁ ଦାନ କରିଯାଇଛନ୍ତି। ଏହି କଲେଜର ଅଧ୍ୟକ୍ଷ ପଦ ଇଂଲଣ୍ଡରେ ଏକ ବିରାଟ ସମ୍ମାନ ବୋଲି ଧରାଯାଏ। ୧୬୫୪ ମସିହାରେ ହାର୍ଭେଙ୍କୁ ଏହି ପଦବୀ ଅଳଂକୃତ କରିବାପାଇଁ ନିମନ୍ତ୍ରଣ ମିଳିଥିଲା। କିନ୍ତୁ ନିଜର ଶାରୀରିକ-ଅସୁସ୍ଥତା ଯୋଗୁଁ ସେ ଏହା ଗ୍ରହଣ କରିନଥିଲେ।

ଶେଷରେ ମସ୍ତିଷ୍କରେ ରକ୍ତସ୍ରାବ ହୋଇ ସେ ୧୬୫୭ ମସିହାରେ ପ୍ରାଣତ୍ୟାଗ କଲେ।

ଏହି ମହାମନିଷୀଙ୍କ ଜୀବଦ୍ଦଶା ମଧ୍ୟରେ ଅନେକ ତାଙ୍କର ମତାମତକୁ କେବଳ ଅଗ୍ରାହ୍ୟ କରିନାହାନ୍ତି, ତାଙ୍କୁ 'ପାଗଳ ଚିକିତ୍ସକ' ବୋଲି ମଧ୍ୟ ଅଭିହିତ କରିଛନ୍ତି। କିନ୍ତୁ ପରେ ତାଙ୍କ ପ୍ରତିଭା ନିକଟରେ ସମସ୍ତେ ନତମସ୍ତକ ହୋଇଛନ୍ତି। ତାଙ୍କ ଜୀବନ କାଳ ମଧ୍ୟରେ ସେ ଯେତେ ସବୁ ସମ୍ମାନ ପାଇଛନ୍ତି ବୋଧହୁଏ ଅସୁସ୍ଥତା ଓ ଅନ୍ୟାନ୍ୟ କାରଣରୁ ତାହାଠାରୁ ଅଧିକ ସମ୍ମାନ ଓ ପଦ ମର୍ଯ୍ୟାଦା ଇତ୍ୟାଦି ସେ ଅଗ୍ରାହ୍ୟ କରିଛନ୍ତି। ଅନେକଙ୍କ ମତରେ ସେ ସପ୍ତଦଶ ଶତାବ୍ଦୀର ସର୍ବଶ୍ରେଷ୍ଠ ଆୟୁର୍ବିଜ୍ଞାନୀ ଏବଂ ସମସ୍ତ ଶତାବ୍ଦୀର ସର୍ବଶ୍ରେଷ୍ଠ ଶରୀର ତତ୍ତ୍ୱବିତ୍ ରୂପେ ପରିଗଣିତ ହେଉଥିବେ।

ତାଙ୍କ ମୃତ୍ୟୁପରେ ତାଙ୍କ ନାମାନୁସାରେ ପୃଥିବୀର ଶ୍ରେଷ୍ଠ ଶରୀର ତତ୍ତ୍ୱବିତ୍ ମାନଙ୍କୁ ନେଇ ହାର୍ଭେସଂଘ ନ୍ୟୁୟର୍କରେ ପ୍ରତିଷ୍ଠିତ ହୋଇଛି। ପ୍ରତିବର୍ଷ ଲଣ୍ଡନ୍‌ର ରୟାଲ୍ କଲେଜରେ ତାଙ୍କ ନାମ ଅନୁସାରେ ଏକ ବକ୍ତୃତାମାଳା ଅନୁଷ୍ଠିତ ହୁଏ। ସର୍ବୋପରି ପାଦୁଆ ବିଶ୍ୱବିଦ୍ୟାଳୟ ଅଟ୍ଟାଳିକାର ସର୍ବୋଚ୍ଚ ସ୍ଥାନରେ ତାଙ୍କ ସ୍ମୃତି ଚିହ୍ନ ରହିଅଛି।

●



# ଏଡ୍‌ୱାର୍ଡ୍ ଜେନର୍ ଓ ବସନ୍ତ ରୋଗ

୧୭୪୯ - ୧୮୨୩ ଖ୍ରୀଷ୍ଟାବ୍ଦ

୧୯୭୫ ମସିହା ପରଠାରୁ ଆମଦେଶରୁ ବସନ୍ତ ରୋଗର ଦୂରୀକରଣ ହୋଇଯାଗିଛି । ବିଶ୍ୱ ସ୍ୱାସ୍ଥ୍ୟ, ଅକ୍ସଫାମ୍, ଭାରତ ସରକାର, ସମସ୍ତ ରାଜ୍ୟ ସରକାର ଓ ଟାଟା କମ୍ପାନୀର ମିଳିତ ଉଦ୍ୟମରେ ଏହି ରୋଗ ବିରୁଦ୍ଧରେ ଅଭିଯାନ ଆରମ୍ଭ ହୋଇ ଦୁଇବର୍ଷ ମଧ୍ୟରେ

ଦେଶରୁ ଏହି ରୋଗକୁ ସମୂଳେ ବିନାଶ କରାଗଲା । ତା' ପରଠାରୁ ନିୟମିତ ବସନ୍ତ ପ୍ରତିଷେଧକ ଟୀକା ଦିଆଯିବା ଫଳରେ ଆଉ ବସନ୍ତ ରୋଗ ହେଉନାହିଁ । ଖାଲି ସେତିକି ନୁହେଁ ୧୯୭୭ ମସିହାଠାରୁ ସାରା ବିଶ୍ୱକୁ ବସନ୍ତରୋଗ ମୁକ୍ତ ବୋଲି ଘୋଷଣା କରାଯାଇଛି ।

ବସନ୍ତ ଏକ ସାଙ୍ଘାତିକ ସଂକ୍ରାମକ ରୋଗ । ପୂର୍ବରୁ ଏହି ରୋଗ ପୃଥିବୀର ପ୍ରତ୍ୟେକ ଦେଶରେ ଦେଖା ଦେଉଥିଲା । ଏହି ରୋଗର କୌଣସି ନିର୍ଦ୍ଦିଷ୍ଟ ଚିକିତ୍ସା ନଥିବାଯୋଗୁ ଏହା ଥରେ ଦେଖାଦେଲେ ଆଖପାଖ ଅଞ୍ଚଳରେ ଖୁବ୍ ଶୀଘ୍ର ବ୍ୟାପି ଯାଉଥିଲା । ରୋଗ ସଂକ୍ରାମକ ହୋଇଥିବା ଯୋଗୁଁ ରୋଗୀ ପାଖକୁ ଭୟରେ କେହି ଯାଆନ୍ତି ନାହିଁ । ଫଳରେ ରୋଗୀ ଖୁବ୍ କଷ୍ଟପାଏ । । ବେଳେ ବେଳେ ଏହି ରୋଗ ଯୋଗୁଁ ଗୋଟିଏ ଗୋଟିଏ ଗ୍ରାମ ବା ସହର ସମ୍ପୂର୍ଣ୍ଣ ଭାବେ ଜନଶୂନ୍ୟ ହୋଇଯାଏ । ଯଦି କେହି ବଞ୍ଚିଯାଏ ତେବେ ସେ ବିକୃତ, ବିକଳାଙ୍ଗ ବା ଅନ୍ଧ ହୋଇଯାଏ ।

ଅନେକ ଶତାବ୍ଦୀପୂର୍ବରୁ ମଣିଷ ଏହି ରୋଗକୁ ଚିହ୍ନିଥିଲେ ହେଁ ଏହାର ପ୍ରତିରୋଧ ବା ଚିକିତ୍ସା ପାଇଁ ଉପଯୁକ୍ତ ଉପାୟ ଜାଣିନଥିଲା । ତେଣୁ ଅନେକ ଅନୁନ୍ନତ ଦେଶ ବା ସମ୍ପ୍ରଦାୟରେ ଏହି ରୋଗକୁ 'ମା' ଠାକୁରାଣୀ' କହି ପୂଜା ଆଦି କରାଯାଉଥିଲା । ଲୋକଙ୍କର ଧାରଣା ଥିଲା ଯେ, କେବଳ ଦେବୀ କୃପାହେଲେ ହିଁ ରୋଗରୁ ମଣିଷ ବଞ୍ଚିପାରେ । ଫଳରେ କାଳେସୀ ଲଗାଇ ଠାକୁରାଣୀଙ୍କ ନାମରେ କେତେକ ନ୍ୟସ୍ତସ୍ୱାର୍ଥ ଲୋକ ରୋଗୀର ଆତ୍ମୀୟ ସ୍ୱଜନଙ୍କ ଠାରୁ ଲାଭ ଉଠାଉଥିଲେ ।

ଅଷ୍ଟାଦଶ ଶତାବ୍ଦୀରେ ଥରେ ଆୟାରଲାଣ୍ଡରେ ଶତକଡ଼ା ସ୍ତ୍ରୀଳିଶ ଭାଗ ଲୋକ ମୃତ୍ୟୁ ମୁଖରେ ପଡ଼ିଥିଲେ । ତତ୍କାଳୀନ ପରିସଂଖ୍ୟାନରୁ ଜଣାପଡ଼େ ଯେ ସେତେବେଳେ ସମଗ୍ର ପୃଥିବୀରେ ସମୁଦାୟ ମୃତ୍ୟୁସଂଖ୍ୟା ମଧ୍ୟରୁ କେବଳ ବସନ୍ତ ରୋଗରେ ଶତକଡ଼ା ଦଶଭାଗ ଲୋକଙ୍କର ମୃତ୍ୟୁ ହେଉଥିଲା ।

ଧୀରେ ଧୀରେ ମଣିଷ ଲକ୍ଷ୍ୟକଲା ଯେ, ବସନ୍ତ ଦ୍ୱାରା ଆକ୍ରମିତ ହୋଇ ଯଦି କେଉଁ ବ୍ୟକ୍ତି ସୁସ୍ଥ ହୋଇଯାଏ, ତାହାକୁ ଦ୍ୱିତୀୟଥର ଏହି ରୋଗ କଦାପି ହେଉନାହିଁ । ମହାମାରୀ ହେଲେ ମଧ୍ୟ ସେହି ବ୍ୟକ୍ତି ନିରାପଦ ରହେ । ଏହି ରୋଗ ବିଷୟରେ ଆଉ ଗୋଟିଏ ଆଶ୍ଚର୍ଯ୍ୟକଥା ମଧ୍ୟ ଲକ୍ଷ୍ୟ କରାଗଲା, ଗାଈ ମାନଙ୍କ ଦେହରେ ଏକ ପ୍ରକାର ବସନ୍ତ ହୁଏ । ତାହାକୁ ଗୋ-ବସନ୍ତ କୁହାଯାଏ । ଯେଉଁ ଗୋପାଳକମାନଙ୍କୁ ଗାଈ ମାନଙ୍କ ଗହଣରେ ରହିବା ଫଳରେ ଗୋ-ବସନ୍ତ ଆକ୍ରମଣ କରିଥାଏ, ସେମାନେ ମଧ୍ୟ ବସନ୍ତ ରୋଗରୁ ମୁକ୍ତ ରହନ୍ତି । ଏହି ଦୁଇଟି ପର୍ଯ୍ୟବେକ୍ଷଣ ପରବର୍ତ୍ତୀ କାଳରେ ମଣିଷକୁ ଆଶା ଯୋଗାଇଲା । ଏଥିରୁ ଦୁଇଟି ତଥ୍ୟ ମିଳିଲା । ପ୍ରଥମକଥା ହେଲା - ବସନ୍ତ କୌଣସି ଠାକୁରାଣୀ ନୁହେଁ । ଏହା ଅନ୍ୟାନ୍ୟ ରୋଗ ପରି ମଧ୍ୟ ଏକ ସଂକ୍ରାମକ ରୋଗ । ଦ୍ୱିତୀୟରେ ଏହା ଅଜେୟ ନୁହେଁ । ଏହାର ପ୍ରତିକାର ସମ୍ଭବ ।

ପ୍ରାୟ ତିନିଶହ ବର୍ଷ ତଳର କଥା, ସେତେବେଳେ ହଇଜା, ବସନ୍ତ ଓ ପ୍ଲେଗ୍ ଏହି ରୋଗର ନାଁ ଶୁଣିଲେ ଲୋକେ ଛାନିଆଁ ହୋଇଯାଉଥିଲେ । ଯଦି କୌଣସି ଗ୍ରାମ ବା ସହରରେ ଏ ରୋଗ ମାନଙ୍କ ଭିତରୁ କୌଣସିଟି ଆରମ୍ଭ ହୋଇଛି ତେବେ ସାଥେ ସାଥେ ଲୋକମାନେ ଗାଁ ଗଣ୍ଡା, ଘରଦ୍ୱାର ଛାଡି ଅନ୍ୟସ୍ଥାନକୁ ପ୍ରାଣବିକଳରେ ପଳାଇଯାଉଥିଲେ । ଯେଉଁମାନେ ରହିଯାଉଥିଲେ ସେମାନେ ପ୍ରାୟତଃ ରୋଗାକ୍ରାନ୍ତ ହୋଇ ପ୍ରାଣ ହରାଉଥିଲେ । ଏହି ରୋଗ ଯୋଗୁଁ କେତେ ଯେ ଜନପଦ ଓ ସହର ପରିତ୍ୟକ୍ତ ହୋଇ ଧରାଶାୟୀ ହୋଇଛି ଇତିହାସ ତାହାର ହିସାବ ରଖିପାରିନାହିଁ ।

ବସନ୍ତ ରୋଗର ଉତ୍ପୀଡ଼ନରେ ମାନବ ସମାଜ ହାହାକାର କରୁଥିବା ସମୟରେ ୧୭୪୯ ମସିହା ମେ ମାସ ୧୭ ତାରିଖ ଦିନ ଇଂଲଣ୍ଡର ବର୍କଲେ ଠାରେ ଜନ୍ମଗ୍ରହଣ କଲେ ଜଣେ ଯୁଗପୁରୁଷ । ନାମ ତାଙ୍କର ଏଡ୍‌ୱାର୍ଡ ଜେନର୍ । ତୁଳସୀ ଦୁଇପତ୍ରରୁ ବାସିଲା ପରି ତାଙ୍କର ଗୁଣାବଳୀ ପିଲାଦିନୁ ଧୀରେ ଧୀରେ ସ୍ପଷ୍ଟ ହେବାକୁ ଲାଗିଲା । ଅନ୍ୟର ଦୁଃଖ ସେ ଆଦୌ ସହ୍ୟ କରିପାରୁନଥିଲେ । ପଡ଼ିଶା ଘରର ପିଲା ଯଦି ବସ୍ତ୍ରାଭାବରୁ ଥଣ୍ଡାରେ ଥରୁଛି

ସେ ନିଜ ଦେହରୁ ଭଲ୍ ପୋଷାକ ବାହାର କରି ତାକୁ ଦେଇ ଦେଉଥିଲେ। ତାଙ୍କୁ ଯେତେବେଳେ ମାତ୍ର ଦଶବର୍ଷ ପ୍ରିୟ ମାମୁଁଙ୍କର ପରିବାରର ସମସ୍ତେ ବସନ୍ତ ଯୋଗେ ମୃତ୍ୟୁମୁଖରେ ପଡ଼ିଲେ। ସେହିଦିନୁ ତାଙ୍କ ମନରେ ଆନ୍ଦୋଳନ ସୃଷ୍ଟି ହେଲା। ଯେଉଁ ବସନ୍ତ ରୋଗ ତାଙ୍କର ମାମୁଁଙ୍କ ପରିବାର ବିନାଶ କଲା, ଯେଉଁ ରୋଗ ପ୍ରତିବର୍ଷ ପୃଥିବୀର ଅସଂଖ୍ୟ ଲୋକଙ୍କଠାରୁ ତାଙ୍କର ପ୍ରିୟଜନଙ୍କୁ ଛଡ଼ାଇନେଇଛି ସେହି ରୋଗର ବିନାଶ କ'ଣ କରିହେବନାହିଁ ? ଶିଶୁ ଜେନର୍ ଏହି ଚିନ୍ତାରେ ବୁଡ଼ିଗଲେ। ଅନ୍ୟ କିଛି ତାଙ୍କୁ ଭଲ ଲାଗିଲା ନାହିଁ।। ପାଠପଢ଼ା, ଖେଳ, ସାଙ୍ଗସାଥୀ ଏପରିକି ଖିଆପିଆ କଥା ସବୁ ଭୁଲି ସେ ନିଛାଟିଆ ଯାଗା ମାନଙ୍କରେ ବସି କେବଳ ଚିନ୍ତା କରିବାକୁ ଲାଗିଲେ।

ତାଙ୍କର ଏପ୍ରକାର ଅସଂସାରୀ ପ୍ରକୃତି ଦେଖି ତାଙ୍କ ପିତା ପ୍ରମାଦ ଗଣିଲେ। ଶେଷରେ ସେ ଜେନରଙ୍କ ମନକଥା ଜାଣି ତାଙ୍କୁ ବ୍ରିଷ୍ଟଲ୍ ନିକଟବର୍ତ୍ତୀ ସନବରୀ ଗ୍ରାମରେ ଥିବା ଜଣେ ସର୍ଜନଙ୍କ ପାଖକୁ ଡାକ୍ତରୀ ବିଦ୍ୟା ଶିକ୍ଷା କରିବାପାଇଁ ପଠାଇଦେଲେ। ସେତେବେଳେ ତାଙ୍କୁ ମାତ୍ର ୧୩ ବର୍ଷ ବୟସ। ଡାକ୍ତରୀ ପଢ଼ିବାକୁ ହେଲେ ପ୍ରଥମେ ଦୁଇବର୍ଷ କୌଣସି ନାମୀ ସର୍ଜନଙ୍କ ପାଖରେ ଶିକ୍ଷାନବିସ୍ ରହି ତାପରେ ଦୁଇବର୍ଷ ମେଡ଼ିକାଲ ସ୍କୁଲ ବା କଲେଜ୍‌ରେ ପଢ଼ିବାକୁ ପଡୁଥିଲା। ଜେନର ଦୁଇବର୍ଷ ଶିକ୍ଷାନବିସ୍ ରହିବା ପରେ ଲଣ୍ଡନ ଗଲେ। ସେଠାରେ ହଣ୍ଟର୍ ନାମକ ଜଣେ ସର୍ଜନଙ୍କ ପାଖରେ ୬ ବର୍ଷ କାଳ ପାଠ ପଢ଼ିଲେ। ସେହିଠାରେ ତାଙ୍କୁ ଡାକ୍ତରୀ ଉପାଧି ମିଳିଲା।

ତାଙ୍କର ଛାତ୍ରାବସ୍ଥାରେ ଥରେ ଜଣେ ଗୋପାଳିକା ଲର୍ଡ଼ ହଣ୍ଟରଙ୍କ ନିକଟକୁ ଚିକିତ୍ସାପାଇଁ ଆସିଥିଲା। ତା'ସହିତ କଥାବାର୍ତ୍ତା ହେଲାବେଳେ ସେ ଜାଣିବାକୁ ପାଇଲେ ଯେ, ସେହି ଗୋପାଳିକାକୁ ଅତୀତରେ ଗୋ-ବସନ୍ତ ରୋଗ ହୋଇଥିଲା। ପ୍ରଶ୍ନୋତ୍ତର ମାଧ୍ୟମରେ ଜେନର ଆହୁରି ଜାଣିବାକୁ ପାଇଲେ ଯେ ଗୋ-ବସନ୍ତ ରୋଗ ଗାଈମାନଙ୍କୁ ହୁଏ। ଯେଉଁମାନେ ଗାଈ ଦୁହନ୍ତି ସେମାନଙ୍କୁ ମଧ୍ୟ ଏହି ରୋଗ ହେଇଁପାରେ, ତେବେ ଏହି ରୋଗ ଅତି ମୃଦୁ ପ୍ରକୃତିର। ଯେଉଁ ବ୍ୟକ୍ତିକୁ ଏହି ରୋଗ ହେଇଁଥାଏ ସାଧାରଣତଃ ତା'ର ହାତ ଓ ଆଙ୍ଗୁଠି ଆଦିରେ କାଛୁଭଳି ଛୋଟ ଛୋଟ ଘା' ଦେଖାଦିଏ। ହାଲ୍‌କା

ଜ୍ୱର ଆସେ। ପ୍ରାୟ ଦୁଇ ସପ୍ତାହ ମଧ୍ୟରେ ଘା' ଶୁଖିଯାଏ ଏବଂ ଜ୍ୱର ମଧ୍ୟ ଠିକ୍ ହୋଇଯାଏ।

ମେଡ଼ିକାଲ ପାଠ ସାରିବାର ଅଳ୍ପକାଳ ମଧ୍ୟରେ ୧୭୭୩ ମସିହାରେ ଜେନର୍ ନିଜ ଭିଟାମାଟି ବର୍କଲେକୁ ଫେରିଆସି ନିଜର ଜୀବିକା ପାଇଁ ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ। ମନ ଭିତରେ ସେହି ଗୋପାଳିକାର କଥାଟି ଥାଏ। ଅନେକ ଲୋକଙ୍କ ସହିତ ଆଲୋଚନା କରିବାପରେ ସେ ନିଶ୍ଚିତ ହେଲେ ଯେ, ଯେଉଁ ମାନଙ୍କୁ ଗୋ-ବସନ୍ତ ହୋଇଛି, ସେମାନଙ୍କୁ ବସନ୍ତ ରୋଗ ହେଉନାହିଁ। ଇତି ମଧ୍ୟରେ ଚିକିତ୍ସା ବ୍ୟବସାୟରୁ ସେ କିଛି ପରିମାଣର ଅର୍ଥ ମଧ୍ୟ ଯୋଗାଡ଼ କରି ସାରିଥାନ୍ତି।

ଏଥର ନିଜର ଅଭିଜ୍ଞତା ଓ ଅର୍ଥକୁ ପୁଞ୍ଜିକରି ସେ ନିଜର ଅଭିଳାଷ ପୂର୍ଣ୍ଣ କରିବାପାଇଁ ଆଗେଇ ଆସିଲେ। ଜଣେ ଗୋପାଳିକାର ଗୋ-ବସନ୍ତ ଘା'ରୁ କିଛି ତରଳ ପଦାର୍ଥ ଆଣି ପ୍ରଥମେ ଏହାକୁ ଜେମ୍ସ୍ ପିପ୍ସ୍ ନାମକ ଏକ ବାଳକ ଶରୀରକୁ ସୂଚି ପ୍ରୟୋଗ ଦ୍ୱାରା ପ୍ରବେଶ କରାଇଲେ। ଫଳରେ ସେହି ବାଳକକୁ ଗୋ-ବସନ୍ତ ମୃଦୁ ଆକ୍ରମଣ ହେଲା। ଦୁଇ ସପ୍ତାହ ମଧ୍ୟରେ ତା' ଦେହରୁ ଜ୍ୱର ଓ ଘା' ସମ୍ପୂର୍ଣ୍ଣ ଉପଶମ ହୋଇଗଲା। ତା'ର ଦେଢ଼ମାସ ପରେ ଜେନର୍ ଜଣେ ବସନ୍ତ ରୋଗୀର ଘା'ରୁ କିଛି ରକ୍ତ ଲସା ଆଣି ପୁଣି ଥରେ ପିପ୍ସ୍ ଦେହରେ ଇଂଜେକ୍ସନ୍ ଦେଲେ। କିନ୍ତୁ ଆଶ୍ଚର୍ଯ୍ୟକଥା ପିପ୍ସକୁ ବସନ୍ତ ଆକ୍ରମଣ କରିଲା ନାହିଁ। ତାଙ୍କର ପରୀକ୍ଷା ସଫଳ ହୋଇଛି ଜାଣି ଜେନର୍ ଆନନ୍ଦରେ ନାଚି ଉଠିଲେ। ତାଙ୍କର ପରୀକ୍ଷା ପ୍ରମାଣ କରିଦେଲା ଯେ, ଗୋ-ବସନ୍ତ ଘା'ର ତରଳପଦାର୍ଥକୁ ଇଂଜେକ୍ସନ୍ ରୂପେ ଗ୍ରହଣ କରିବା ଦ୍ୱାରା ପିପ୍ସ୍ ବସନ୍ତ ରୋଗରୁ ପ୍ରତିରକ୍ଷିତ ବା ଅନାକ୍ରମ୍ୟ ହୋଇ ପାରିଛି।

ପ୍ରଥମେ ତ କୌଣସି ଲୋକ ଜେନରଙ୍କ କଥାକୁ ଗୁରୁତ୍ୱ ଦେଲେନାହିଁ। ସେତେବେଳର ପ୍ରତିଷ୍ଠିତ ଚିକିତ୍ସକ ମାନଙ୍କର ଦୃଢ଼ ଧାରଣା ଥିଲା ଯେ ଗୋ-ବସନ୍ତ ଓ ମାନବ ସମାଜକୁ ଆକ୍ରମଣ କରୁଥିବା ବସନ୍ତ ଉଭୟ ସମ୍ପୂର୍ଣ୍ଣ ଭିନ୍ନ। ତେଣୁ ଗୋ-ବସନ୍ତ ଦ୍ୱାରା ମାନବକୁ ବସନ୍ତ ରୋଗ କବଳରୁ

ରକ୍ଷା କରିବା କଥା ହାସ୍ୟାସ୍ପଦ ବୋଲି ସେମାନେ ମତ ଦେଲେ । ଏପରିକି କେତେକ ଧର୍ମାନ୍ଧ ବ୍ୟକ୍ତି ତାଙ୍କ ବିରୁଦ୍ଧରେ ପ୍ରଚ୍ୟର କରିବା ଆରମ୍ଭ କରିଦେଲେ । ସେମାନଙ୍କ ବକ୍ତବ୍ୟ ହେଲା ଗାଈ ଦେହରୁ କୌଣସି ତରଳ ପଦାର୍ଥ ଆଣି ମଣିଷ ଦେହରେ ପ୍ରବେଶ କରାଇବା ଅତି ଜଘନ୍ୟ ତଥା ଧର୍ମ ବିରୋଧୀ କାର୍ଯ୍ୟ । ଫଳରେ ସାଧାରଣ ଲୋକେ ଜେନର୍‌ଙ୍କୁ ଘୃଣା କରିବାକୁ ଆରମ୍ଭ କଲେ । କିନ୍ତୁ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସେ ନିଜର ଲକ୍ଷ୍ୟରୁ ବିଚ୍ୟୁତ ନ ହୋଇ କର୍ମପଥରେ ଆଗେଇ ଚାଲିଲେ । ଗାଁ ଗାଁ ବୁଲି ଗୋ-ବସନ୍ତ ହୋଇଥିବା ଲୋକ ମାନଙ୍କୁ ଭେଟି ସେମାନଙ୍କ ଘା' ଓ ଫୋଟକା ମାନଙ୍କରୁ ଆବଶ୍ୟକୀୟ ରକ୍ତଲସି ସଂଗ୍ରହ କରିବାରେ ଲାଗିଲେ । ସେହି ସଂଗୃହିତ ତରଳ ପଦାର୍ଥରୁ ଗୋବୀଜ ଟିକା ତିଆରି କରିବାରେ ସେ ମନୋନିବେଶ କରିଲେ ।

ଶେଷରେ ତାଙ୍କ ଅଧ୍ୟବସାୟର ସୁଫଳ ମିଳିଲା । ୧୮୦୫ ମସିହାରେ ନେପୋଲିଅନ୍‌ଙ୍କର ସମଗ୍ର ୟୁରୋପରେ ପ୍ରଭୂତ ପ୍ରଭାବ ରହିଥାଏ । ଫ୍ରାନ୍‌ସ ଓ ଇଂଲଣ୍ଡ ଯୁଦ୍ଧରେ ହଜାର ହଜାର ସଂଖ୍ୟାରେ ବ୍ରିଟିଶ୍ ସୈନ୍ୟ ବନ୍ଦୀ ହୋଇଥାଆନ୍ତି । ନେପୋଲିଅନ୍‌ଙ୍କ ଅନୁରୋଧକ୍ରମେ ଜେନର୍ ଫରାସୀ ସୈନ୍ୟ ବାହିନୀକୁ ଗୋବୀଜ ଟୀକା ଦେଲେ । ପାରିଶ୍ରମିକ ଭାବେ ଜେନର୍ ଚାହିଁଲେ ବ୍ରିଟିଶ୍ ସୈନ୍ୟଙ୍କ ମୁକ୍ତି । ସେ ଚାହିଁଥିଲେ ନେପୋଲିଅନ୍ ତାଙ୍କୁ ଅକଳନୀୟ ଅର୍ଥ ପ୍ରଦାନ କରିଥାନ୍ତେ । କିନ୍ତୁ ମାନବ ସମାଜର ମଙ୍ଗଳକାମୀ ଜେନରଙ୍କ ସ୍ୱାର୍ଥତ୍ୟାଗର ନିଦର୍ଶନ ଫଳରେ ଯେଉଁମାନେ ତାଙ୍କୁ ସମାଲୋଚନା କରୁଥିଲେ ସେମାନେ ନତମସ୍ତକ ହୋଇ ତାଙ୍କ ଦ୍ୱାରା ଉଦ୍ଭାବିତ ତଥ୍ୟକୁ ସମ୍ମାନ ଜଣାଇଲେ । ସାରା ବିଶ୍ୱରେଗୋବୀଜ ଟୀକାର ଉପକାରିତା ବିଷୟ ପ୍ରଚ୍ୟରିତ ହେଲା । ଇଂଲଣ୍ଡ ଭିନ୍ନ ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ଏହା ଆଦୃତ ହେଲା । ପୃଥିବୀର ବିଭିନ୍ନ ଦେଶ ବୁଲି ଜେନର୍ ଏହାର ପ୍ରଚ୍ୟର କରିବାକୁ ଲାଗିଲେ । ଧର୍ମଯାଜକ ମାନେ ମଧ୍ୟ ଲୋକ ମାନଙ୍କୁ ଟୀକା ନେବାପାଇଁ ଉପଦେଶ ଦେଲେ । ଫଳରେ ପ୍ରତିବର୍ଷ ଲକ୍ଷ ଲକ୍ଷ ସଂଖ୍ୟାରେ ଲୋକେ ନିଜକୁ ବସନ୍ତ ରୋଗର ପ୍ରାଦୁର୍ଭାବରୁ ରକ୍ଷା କରିପାରିଲେ । ଇଂଲଣ୍ଡ, ସୁଇଜରଲ୍ୟାଣ୍ଡ, ଋଷିଆ ଦେଶ ମାନଙ୍କରେ ଏହାର

ପ୍ରଚାର ଓ ପ୍ରସାର ହେଲା। ବିଶ୍ୱରୁ ବିଭିନ୍ନ ଦେଶ ଜେନରଙ୍କୁ ବିଭିନ୍ନ ଉପାଧିରେ ଭୂଷିତ କରାଇଲେ। ଇଂଲଣ୍ଡର ପାର୍ଲାମେଣ୍ଟ ମଧ୍ୟ ଜେନରଙ୍କୁ ୧୮୦୨ ଓ ୧୮୦୬ ମସିହାରେ ତାଙ୍କର ଜନ ହିତକର କାର୍ଯ୍ୟ ପାଇଁ ପ୍ରଭୂତ ଅର୍ଥ ପୁରସ୍କାର ସ୍ୱରୂପ ପ୍ରଦାନ କଲେ।

ଜେନର୍ ତାଙ୍କ ଜୀବନ ସାରା ଗବେଷଣା କରି ମାନବ କଲ୍ୟାଣ ପାଇଁ ଗୋବୀଜ ଟୀକାର ଉଦ୍ଭାବନ କରିଥିଲେ। ଫଳରେ ଆଜି ବିଶ୍ୱବାସୀ ବସନ୍ତ ରୋଗରୁ ମୁକ୍ତିପାଇ ପାରିଛନ୍ତି। ଏହି ମହାପୁରୁଷ ୧୮୨୩ ମସିହା ଜାନୁଆରୀ ୨୬ ତାରିଖ ଦିନ ବର୍କଲେ ସହରଠାରେ ଶେଷ ନିଶ୍ୱାସ ତ୍ୟାଗ କଲେ। ସେ ଆଜି ନାହାନ୍ତି ସତ ହେଲେ ତାଙ୍କ ବସନ୍ତ ଟୀକା ବୋଧହୁଏ ଚିକିତ୍ସା ବିଜ୍ଞାନରେ ସମସ୍ତ ଉଦ୍ଭାବନ ମଧ୍ୟରେ ଏ' ପର୍ଯ୍ୟନ୍ତ ସର୍ବାଧିକ ଜୀବନ ରକ୍ଷା କରାଇବାରେ ସମର୍ଥ ହୋଇପାରିଛି।





## ଡକ୍ଟର ସାମୁଏଲ ହାନିମାନ୍ ଓ ହୋମିଓପାଥି

୧୦.୪.୧୭୫୫ – ୨.୭.୧୮୪୩

ଆଲୋପାଥି
ବ୍ୟତୀତ ଆଧୁନିକ ଯୁଗରେ
ଯେଉଁସବୁ ପ୍ରକାରର ଚିକିତ୍ସା
ପଦ୍ଧତି ଅଧିକ ଲୋକପ୍ରିୟ
ହୋଇପାରିଛି ତନ୍ମଧ୍ୟରୁ

ହୋମିଓପାଥି ଅନ୍ୟତମ। ପୃଥିବୀର ଅନେକ ଦେଶରେ ଏହା ଦିନକୁ ଦିନ ଅଧିକରୁ ଅଧିକ ଲୋକପ୍ରିୟ ହେବାରେ ଲାଗିଛି । ଏହି ପଦ୍ଧତିର ଉତ୍ପତ୍ତି, ଗତି ଓ ପ୍ରକୃତି ବେଶ୍ କୌତୁହଳପ୍ରଦ।

ହୋମିଓପାଥିର ଜନ୍ମଦାତା ହେଉଛନ୍ତି ଡାଃ ସାମୁଏଲ୍ ହାନିମାନ୍। ଜର୍ମାନୀର ସାକ୍ସନ୍ ପ୍ରଦେଶରେ ୧୭୫୫ ମସିହା ଏପ୍ରିଲ୍ ଦଶ ତାରିଖ ଦିନ ସେ ଜନ୍ମଗ୍ରହଣ କରିଥିଲେ। ପିଲାଦିନୁ ସେ ଅନ୍ୟମାନଙ୍କ ଅପେକ୍ଷା ସ୍ୱତନ୍ତ୍ର ଚିନ୍ତାଧାରାର ଥିଲେ। ଆଲୋପାଥି ଚିକିତ୍ସା ପଦ୍ଧତିରେ ପାଠପଢ଼ି ସେ ଏମ୍.ଡି. ଡିଗ୍ରୀ ହାସଲ କରିବା ପରେ ନିଜସ୍ୱ ଚିକିତ୍ସା ପଦ୍ଧତିରେ ବ୍ୟବସାୟ ଆରମ୍ଭ କରିଥିଲେ। ବିଭିନ୍ନ ରୋଗୀଙ୍କ ଚିକିତ୍ସା ଅବସରରେ ସେ ଅନୁଭବ କଲେ ଯେ, ଆଲୋପାଥି ଚିକିତ୍ସା ପଦ୍ଧତି ସ୍ୱୟଂ ସଂପୂର୍ଣ୍ଣ ନୁହେଁ। ଅନେକ ରୋଗୀ ଚିକିତ୍ସା ପାଇବା ପରେ ଲକ୍ଷଣ ଶୂନ୍ୟ ହେଉଛନ୍ତି ସତ ହେଲେ ସଂପୂର୍ଣ୍ଣ ରୋଗମୁକ୍ତ ହୋଇପାରୁ ନାହାନ୍ତି। ତେଣୁ ମନେ ମନେ ସେ ଏକ ନୂଆ ଚିକିତ୍ସା ପଦ୍ଧତିର ଅନୁସନ୍ଧାନ କରିବା ପାଇଁ ଇଚ୍ଛା କଲେ।

୧୭୮୪ ମସିହାରେ ଜଣେ ଡାକ୍ତର ବନ୍ଧୁଙ୍କ ନିକଟକୁ ନିଜର ମନୋଭାବ ପ୍ରକାଶ କରି ଏକ ପତ୍ରରେ ଲେଖିଥିଲେ, "ଆମେ ସମସ୍ତେ ଅନ୍ଧାର ଭିତରେ ବାଡ଼ି ବୁଲାଉଛୁ। ମୁଁ ମଧ୍ୟ ସେଇଆ କରୁଛି। କିନ୍ତୁ ଏହା ଦ୍ୱାରା ତୃପ୍ତି ମିଳୁନାହିଁ। ଅନ୍ୟମାନେ ଯେଉଁ ଔଷଧ ପୂର୍ବରୁ ଲେଖିଯାଉଛନ୍ତି ଆମେ ମଧ୍ୟ ସେଇଆ ଲେଖୁଛୁ। ଅନ୍ୟ କିଛି ଚିନ୍ତା କରିବା ପାଇଁ ହାତରେ ସମୟ ନାହିଁ।" ଏହି ଚିଠିରୁ ତାଙ୍କ ମନର ଅବସ୍ଥା ସ୍ପଷ୍ଟ ଜାଣିହୁଏ।

ତାଙ୍କର ସନ୍ତାନମାନଙ୍କୁ ସେ ଯେଉଁ ଔଷଧ ଦେଲେ ସେଥିରେ ଉଚିତ୍ ଫଳପ୍ରାପ୍ତି ହେଲା ନାହିଁ। ବରଂ ଔଷଧର ପ୍ରଭାବରେ କେତେଗୁଡ଼ିଏ ପ୍ରତିକ୍ରିୟା ଦେଖାଦେଲା। ନିଜ ପରିବାରରେ ତାଙ୍କ ଚିକିତ୍ସାର ଏହି ନୈରାଶ୍ୟଜନକ ଅବସ୍ଥା ଦେଖି ତାଙ୍କ ମନ ଅଧିକ ଅସ୍ଥିର ହେଲା।

କେତେକ ଔଷଧି ପ୍ରତ୍ୟେକ ବ୍ୟକ୍ତିବିଶେଷ ପାଇଁ ନର୍ଦ୍ଦିଷ୍ଟ ପ୍ରକାର କାର୍ଯ୍ୟ କରୁନାହିଁ କାହିଁକି ? ପ୍ରତ୍ୟେକ ଔଷଧର ଯେଉଁ ପ୍ରଭାବ ତାହା ପ୍ରତ୍ୟେକ

ବ୍ୟକ୍ତି ପାଇଁ ସମାନ ନୁହେଁ କାହିଁକି ? ଯଦି କୌଣସି ଔଷଧ ବା ଔଷଧିକରଣ ପ୍ରଣାଳୀ କୌଣସି ବ୍ୟକ୍ତି ବିଶେଷ ପ୍ରତି ଅନୁକୂଳ ନୁହେଁ ତେବେ ତାହା ପ୍ରୟୋଗ କରିବା କଣ ସମୀଚୀନ ହେବ ?

ବାରମ୍ବାର ଉପରୋକ୍ତ ଚିନ୍ତା ତାଙ୍କ ଚିତ୍ତକୁ ଆନ୍ଦୋଳିତ କଲା। ଫଳରେ ଏକ ନୂତନ ଔଷଧ ପ୍ରଣାଳୀ ଉଦ୍‌ଭାବନ କରିବା ପାଇଁ ସେ ଆପ୍ରାଣ ଚେଷ୍ଟା କଲେ।

ଇତି ମଧ୍ୟରେ ବିଶିଷ୍ଟ ଚିକିତ୍ସାବିତ୍ କୁଲେନ୍‌ଙ୍କ ପ୍ରଣିତ ମେଟେରିଆ ମେଡ଼ିକା ଅନୁବାଦ କରିବା ସମୟରେ ସେ ଜାଣିପାରିଲେ ଯେ କୁଇନାଇନ୍‌ର ଜ୍ୱର ନାଶିକା ଶକ୍ତି ଯେପରି ଅଛି, ସେହିପରି ସୁସ୍ଥ ମଣିଷ ଦେହରେ ପ୍ରୟୋଗ କଲେ ଜ୍ୱର ଉତ୍ପାଦନ କରିପାରିବାର ଶକ୍ତି ମଧ୍ୟ ରହିଛି। ଏହା ଜାଣିବା ପରେ ସେ ଚିନ୍ତା ରାଜ୍ୟରେ ବୁଡ଼ିଗଲେ।

ନିଜ ଦେହରେ, ନିଜ ସ୍ତ୍ରୀ ଓ ପିଲାମାନଙ୍କ ଦେହରେ କୁଇନାଇନ୍ ଏବଂ ଅନ୍ୟ ୫୦ ପ୍ରକାର ଔଷଧର ବୃହତ୍ ମାତ୍ରା ଓ କ୍ଷୁଦ୍ରମାତ୍ରା ପ୍ରୟୋଗ କରି ଉତ୍ପନ୍ନ ଲକ୍ଷଣଗୁଡ଼ିକୁ ଏକ ବହିରେ ଟିପି ରଖିଲେ। ଯେଉଁ ବହିରେ ସେ ଏଗୁଡ଼ିକ ଲେଖିଛନ୍ତି ତାହାର ନାମ 'ମାଟେରିଆ ମେଡ଼ିକା ପ୍ୟୁରା''। ତାଙ୍କର ଏହି ପରୀକ୍ଷା ଅବିରତ ଚାଲିଲା। ଅନ୍ୟ ଲୋକମାନଙ୍କୁ ମଧ୍ୟ ବିଭିନ୍ନ ଔଷଧ ଦେଇ ସେମାନଙ୍କ ଠାରେ ଦେଖାଦେଉଥିବା ଲକ୍ଷଣଗୁଡ଼ିକୁ ଟିପି ରଖିଲେ। ୧୭୯୬ ମସିହାରେ ସେ ଘୋଷଣା କଲେ ଯେ, ପ୍ରତ୍ୟେକ ଶକ୍ତି ବା ବିଭବଶାଳୀ ଔଷଧ ଶରୀର ମଧ୍ୟରେ ଏକ ନୂତନ ରୋଗର ସୃଷ୍ଟିକରେ। ବୃହତ୍ ଔଷଧର ଶକ୍ତି ଯେତେ ଅଧିକ ଥିବ, ନୂତନ ରୋଗର ଲକ୍ଷଣାବଳୀ ସେତିକି ତୀବ୍ର ହେବ। ଅତିମାତ୍ରାରେ କୌଣସି ଔଷଧ ସେବନ କଲେ ରୋଗୀ ଠାରେ ସେହି ଲକ୍ଷଣମାନ ଦେଖାଯାଏ ତେବେ ବ୍ୟବହୃତ ଔଷଧକୁ ସୂକ୍ଷ୍ମ ମାତ୍ରାରେ ପ୍ରୟୋଗକଲେ ଉକ୍ତ ରୋଗ ଆରୋଗ୍ୟ ହେବା ସୁନିଶ୍ଚିତ। ତାଙ୍କର ଏହି ଚିକିତ୍ସା ପ୍ରଣାଳୀକୁ ''ସଦୃଶ ଚିକିତ୍ସା ବିଧାନ'' ବା ''ହୋମିଓପାଥି'' କୁହାଗଲା।

ଲାଟିନ୍ ଭାଷାରେ ତାଙ୍କର ସ୍ଲୋଗାନ୍ ଥିଲା, 'ସିମିଲିଆ, ସିମିଲି ବସ୍ କ୍ୟୁରାଣ୍ଟର'। ଅର୍ଥାତ୍ ସଂପୂର୍ଣ୍ଣ ଲକ୍ଷଣଯୁକ୍ତ ରୋଗୀ ପାଇଁ ସଦୃଶ ଲକ୍ଷଣ ଉତ୍ପାଦନକ୍ଷମ ଔଷଧ ବ୍ୟବସ୍ଥା। ହୋମିଓପାଥି ପ୍ରଣାଳୀରେ ଔଷଧର ସଂଜ୍ଞା ନିରୂପଣ କରିବାକୁ ଯାଇ ସେ କହିଛନ୍ତି "ଯେଉଁ ଦ୍ରବ୍ୟର ସୂକ୍ଷ୍ମ ପ୍ରୟୋଗ ଦ୍ୱାରା ବିକାର ଗ୍ରସ୍ତ ଶରୀର ସଂପୂର୍ଣ୍ଣ ରୂପେ ବିକାର ମୁକ୍ତ ହୁଏ ତାହାକୁ ଔଷଧ କୁହାଯାଏ।" ଏହି ଔଷଧ ତିନି ପ୍ରକାରର ଯଥା ଜାନ୍ତବ, ଉଦ୍ଭିଦଜ ଏବଂ ଧାତବ। ସୁରାସାର ଏବଂ ଦୁଗ୍ଧ ଶର୍କରାର ରୋଗ ନାଶକ ଶକ୍ତି ନାହିଁ। ତେଣୁ ଏହି ଦୁଇ ଦ୍ରବ୍ୟ ସହିତ ମିଶ୍ରଣ କରି ହୋମିଓପାଥି ଔଷଧ ପ୍ରସ୍ତୁତ କରାଯିବାର ବ୍ୟବସ୍ଥା ରହିଛି। ସୁରାସାର ମିଶ୍ରିତ କରି ଉଦ୍ଭିଦରୁ ପ୍ରସ୍ତୁତ ଔଷଧକୁ ମୂଳ ଅରିଷ୍ଟ କୁହାଯାଏ। ବିଭିନ୍ନ ଔଷଧଗୁଡ଼ିକ ଛୋଟ ବଟିକା, ବଡ଼ ବଟିକା, ଚୂର୍ଣ୍ଣ, ଦ୍ରବ ଓ ମୂଳ ଅରିଷ୍ଟ ଆକାରରେ ପ୍ରସ୍ତୁତ ହୋଇଥାଏ।

ମୂଳ ଅରିଷ୍ଟ ଏକ ଭାଗ ଓ ସୁରାସାର ନଅ ଭାଗ ମିଶ୍ରଣରେ ତିଆରି ଔଷଧକୁ ଦଶମିକ ପ୍ରଣାଳୀ ସିଦ୍ଧ ଔଷଧ କୁହାଯାଏ। ସେହିପରି ମୂଳାରିଷ୍ଟ ଏକ ଭାଗ ସହିତ ସୁରାସାର ଅନେଶତ ଭାଗ ମିଶ୍ରଣ ହେଲେ ଔଷଧ ଶତତମିକ ପ୍ରଣାଳୀସିଦ୍ଧ ବୋଲି ଜଣାଯାଏ। ଏଥିରୁ ଜଣାପଡ଼େ ଯେ, ମୂଳାରିଷ୍ଟର କ୍ଷୀଣିକରଣ ଯେତେ ଅଧିକ ହେବ ଔଷଧର ଶକ୍ତି ସେତେ ଅଧିକ ହେବ। ଯେଉଁ ଔଷଧ ଶିଶି ଉପରେ 'x' ଚିହ୍ନଥାଏ ତାହା ଦଶମିକ ପ୍ରଣାଳୀସିଦ୍ଧ, ଯେଉଁଥିରେ ଇଂରାଜୀ 'ସି' ଲେଖାଥାଏ ତାହା ଶତତମିକ ପ୍ରଣାଳୀ ସିଦ୍ଧ ଓ ଯେଉଁଥିରେ ଇଂରାଜୀ 'କ୍ୟୁ' ଲେଖାଥାଏ ତାହା ମୂଳ ଅରିଷ୍ଟ ଔଷଧ।

ହାନିମାନ୍ଙ୍କ ମତରେ ଶରୀର ମଧ୍ୟରେ ଆୟୁଷ୍ୟ ବଳ ଦୁର୍ବଳ ହୋଇପଡ଼ିଲେ ରୋଗ ଦେଖାଦିଏ। ଏହି ବଳ ଶରୀର ଓ ମନକୁ ପ୍ରଭାବିତ କରିଥାଏ। ହୋମିଓପାଥି ଔଷଧ ପ୍ରୟୋଗରେ ରୋଗ ତା'ର ସ୍ଥାନ ଓ ଆକାର ପ୍ରକାର ପରିବର୍ତ୍ତନକରି ଶେଷରେ ସମୂଳେ ଶରୀରରୁ ପ୍ରସ୍ଥାନ କରେ। ଉଦାହରଣ ସ୍ୱରୂପ ଫୁସ୍‌ଫୁସ୍‌ର ନିମୋନିଆ, ପରେ ଗଣ୍ଡକୁ ଆସି ସେଠାରୁ ଚକ୍ଷୁ ବା ଚର୍ମ ଉପରେ ବଥ ହୋଇ ଦେଖାଦେଇପାରେ, ପରେ ସେ ବଥ ଫାଟି ଯାଇ ବ୍ୟକ୍ତି ସଂପୂର୍ଣ୍ଣ ଆରୋଗ୍ୟ ହୁଏ।

ସଦୃଶ ବିଧାନରେ ଚିକିତ୍ସାର ମୂଳମନ୍ତ୍ର ହେଲା ଶରୀରର ପ୍ରତିରୋଧକ ଶକ୍ତିକୁ ବୃଦ୍ଧି କରି ବ୍ୟକ୍ତିକୁ ରୋଗ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ସକ୍ଷମ କରାଇବା। ଚିକିତ୍ସା ପୂର୍ବରୁ ପ୍ରଥମେ ରୋଗୀର ପାରିବାରିକ ଇତିହାସ, ବ୍ୟକ୍ତିଗତ ଇତିହାସ, ଲକ୍ଷଣ ଗୁଡ଼ିକର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା ଆବଶ୍ୟକ। ତେବେ ହିଁ ଶରୀର ମଧ୍ୟରେ ଥିବା ବିଭିନ୍ନ ବିଷମତାକୁ ଦୂରକରିବାରେ ସାହାଯ୍ୟ କରାଯାଇପାରିବ। ଏହି ଚିକିତ୍ସା ପ୍ରଣାଳୀରେ ଲକ୍ଷଣ ଗୁଡ଼ିକର ଚିକିତ୍ସା ଉପରେ ବିଶେଷ ଧ୍ୟାନ ଦିଆଯାଏ।

ହାନିମାନଙ୍କ ମତରେ ଗୋଟିଏ ରୋଗ ବିଭିନ୍ନ ବ୍ୟକ୍ତିଙ୍କ ଠାରେ ଭିନ୍ନ ଭିନ୍ନ ଲକ୍ଷଣ ସୃଷ୍ଟି କରିପାରେ। କିନ୍ତୁ ବିଭିନ୍ନ ରୋଗ ବେଳେ ବେଳେ କେତେକ ବ୍ୟକ୍ତିଙ୍କ ଠାରେ ଏକ ପ୍ରକାର ଲକ୍ଷଣ ଦେଖାଇବା ମଧ୍ୟ ସମ୍ଭବ। ତେଣୁ ସଦୃଶ ବିଧାନରେ ଚିକିତ୍ସକ ରୋଗୀକୁ ଦେଖି ଏବଂ ସେହି ବ୍ୟକ୍ତିର ଆଗ୍ରହ, ବ୍ୟବହାର, ବ୍ୟବସାୟ, ପରିବାର ଆଦି ଭିତ୍ତିଭୂମି ଉପରେ ଆଧାର କରି କେଉଁ ଔଷଧ ସେହି ବ୍ୟକ୍ତି ଠାରେ ରୋଗ ହେତୁ ଉତ୍ପନ୍ନ ଲକ୍ଷଣମାନ ସୃଷ୍ଟି କରିପାରିବ ତାହା ପ୍ରଥମେ ଧାର୍ଯ୍ୟ କରିପାରିବା ଆବଶ୍ୟକ। ହୋମିଓପାଥି ଚିକିତ୍ସକମାନେ ରୋଗୀର ଲକ୍ଷଣ ଦେଖି ଏବଂ ଶରୀରରେ କେଉଁ ଦେହ ଦ୍ରବର ଅଭାବ ବା ଅସନ୍ତୋଳନ ଘଟିଛି ତାହା ନିର୍ଣ୍ଣୟ କରି ଚିକିତ୍ସା ଆରମ୍ଭ କରିଥାଆନ୍ତି।

ଲକ୍ଷଣ ଅନୁଯାୟୀ ଏହି ଚିକିତ୍ସା ପ୍ରଣାଳୀରେ ବିଭିନ୍ନ ରୋଗ ପାଇଁ ଏକ ଔଷଧ ଏବଂ ଗୋଟିଏ ରୋଗ ପାଇଁ ବିଭିନ୍ନ ଔଷଧ ବ୍ୟବହୃତ ହୋଇପାରେ। ତେବେ ହୋମିଓପାଥି ଚିକିତ୍ସା ଶାସ୍ତ୍ର ରୋଗୀ ଓ ଲକ୍ଷଣ ଉପରେ, ରୋଗ ଓ ଔଷଧ ଅପେକ୍ଷା ଅଧିକ ଗୁରୁତ୍ୱ ଦିଏ। ହାନିମାନ ଲକ୍ଷ୍ୟ କଲେ ଯେ, ବିଭିନ୍ନ ବ୍ୟକ୍ତି ନିର୍ଦ୍ଦିଷ୍ଟ ରୋଗରେ ପୀଡ଼ିତ ହେଲେହେଁ ସେମାନଙ୍କ ଶରୀର ରୋଗ ବିରୁଦ୍ଧରେ ସଂଗ୍ରାମ କରିବାର ଶୈଳୀ ପ୍ରତ୍ୟେକ ଶରୀର ପାଇଁ ସ୍ୱତନ୍ତ୍ର। ତେଣୁ ତାଙ୍କ ମତରେ ହୋମିଓପାଥି ଔଷଧ ଦ୍ୱାରା ପ୍ରଥମେ ଲକ୍ଷଣଗୁଡ଼ିକ ଉତ୍ତେଜିତ କରାଇଦେବା ଫଳରେ ଶରୀରରେ ରୋଗ ପ୍ରତିରୋଧ ଶକ୍ତି ବୃଦ୍ଧିପାଇଥାଏ। କୃତ୍ରିମ ଉପାୟରେ ବୃଦ୍ଧିପ୍ରାପ୍ତ ଏହି

ଲକ୍ଷଣଗୁଡ଼ିକୁ ସହଜରେ ପୂର୍ବାବସ୍ଥାକୁ ଅଣାଯାଇପାରେ। କିନ୍ତୁ ଶରୀରର ପ୍ରତିରୋଧ ଶକ୍ତି ସେତେବେଳକୁ ଯଥେଷ୍ଟ ବୃଦ୍ଧି ପାଇସାରିଥିବାରୁ ତାହା ରୋଗକୁ ଖୁବ୍ ସହଜରେ ଦୂର କରିଦେଇପାରେ।

ହାନିମାନଙ୍କ ପ୍ରବର୍ତ୍ତିତ ଏହି ସଦୃଶ ବିଧାନ ଚିକିତ୍ସା ଭାରତକୁ ଇଂରେଜ ଶାସନକାଳ ମଧ୍ୟରେ ଜନ୍ ମାର୍ଟିନ୍ ହେନ୍ ବ୍ରଦରଙ୍କ ଦ୍ୱାରା ପ୍ରଥମେ ଆନୀତ ହୋଇଥିଲା। ସେ ଲାହୋର୍‌ର ମହାରାଜା ରଣଜିତ୍ ସିଂହଙ୍କ ଚିକିତ୍ସକ ଭାବେ ଆସି ଖୁବ୍ ସୁନାମ ଅର୍ଜନ କରିଥିଲେ। ୧୮୫୧ ମସିହାରେ ଏହା କଲିକତାରେ ପ୍ରଭାବ ବିସ୍ତାର କରିବାକୁ ଲାଗିଲା। ଜଣେ ଫରାସୀ ଚିକିତ୍ସକ ଡାଃ ଟୋନ୍‌ରଙ୍କ ସହାୟତାରେ ବାବୁ ରାଜନ୍ ଦତ୍ତଙ୍କ ଦ୍ୱାରା କଲିକତାରେ ଭାରତର ପ୍ରଥମ ହୋମିଓପାଥି ଡାକ୍ତରଖାନା ପ୍ରତିଷ୍ଠିତ ହେଲା। ଡାଃ ମହେନ୍ଦ୍ରଲାଲ ସରକାର ମଧ୍ୟ ଏଥିରେ ଯୋଗ ଦେଲେ ଏବଂ ପରବର୍ତ୍ତୀ କାଳରେ ଭାରତରେ ହୋମିଓପାଥି ଚିକିତ୍ସାକୁ ଜନପ୍ରିୟ କରିବାରେ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଲା। ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ପରି ବିଖ୍ୟାତ ବ୍ୟକ୍ତିମାନଙ୍କ ପୃଷ୍ଠପୋଷକତାରେ ହୋମିଓପାଥି ଭାରତରେ ଲୋକପ୍ରିୟତା ହାସଲ କରିଚାଲିଲା।

ବର୍ତ୍ତମାନ ଅବସ୍ଥାକୁ ଦେଖିଲେ ଏହା ସମଗ୍ର ପୃଥିବୀର ଅଧିକାଂଶ ରାଷ୍ଟ୍ରମାନଙ୍କରେ ଜନପ୍ରିୟ ହୋଇପାରିଛି। ଇଂଲଣ୍ଡର ଯୁବରାଜ ଚାଲସ୍, ଭୂତପୂର୍ବ ପ୍ରଧାନମନ୍ତ୍ରୀ ଥାଚର, କ୍ରିକେଟ୍ ଖେଳାଳି ଇଆନ୍ ବୋଥାମ୍ ଇତ୍ୟାଦି ଏହି ପଦ୍ଧତିର ଜଣେ ଜଣେ ବିଦଗ୍ଧ ସ୍ତାବକ।

ହାନିମାନ୍ ତାଙ୍କ ଜୀବନରେ ମାନବ କଲ୍ୟାଣ ପାଇଁ ଏକା ଏକା ଚିନ୍ତା କରିଚାଲିଛନ୍ତି। ନିଜେ ଜଣେ ଏଲୋପାଥି ଚିକିତ୍ସକ ହେଲେ ହେଁ, ସେହି ଚିକିତ୍ସା ପ୍ରଣାଳୀରେ ଥିବା ଦୁର୍ବଳତାଗୁଡ଼ିକୁ ହୃଦୟଙ୍ଗମ କରି ତା'ର ସଂସ୍କାର ପାଇଁ ହାନିମାନ ବିଭିନ୍ନ ପରୀକ୍ଷା ନିରୀକ୍ଷା କରି ଶେଷରେ ତାଙ୍କର ପୁସ୍ତକ 'ଅରଗାନନ୍ ଅଫ୍ ରାସ୍ନାଲ ଆର୍ଟ ଅଫ୍ ହିଲିଙ୍ଗ' ରଚନା କଲେ। ପ୍ରଥମେ ପ୍ରଥମେ ସେ ତାଙ୍କ ବିଚାରଧାରା କର୍ତ୍ତୃପକ୍ଷଙ୍କୁ ବୁଝାଇବାକୁ ସକ୍ଷମ ହୋଇଥିଲେ।

ଜନତା ମଧ୍ୟ ତାଙ୍କୁ ସମର୍ଥନ କରୁଥିଲା । କିନ୍ତୁ କେତେକ ଷଡ଼ଯନ୍ତ୍ରର ଶୀକାର ହୋଇ ଶେଷରେ ତାଙ୍କୁ ନିଜ ଦେଶ ଛାଡ଼ି ଫ୍ରାନସରେ ଆଶ୍ରୟ ନେବାକୁ ପଡ଼ିଥିଲା ।

ହୋମିଓପାଥି ବା ସଦୃଶ ବିଧାନ ଗତ ୨୦୦ ବର୍ଷ କାଳ ମାନବ ସମାଜର କଲ୍ୟାଣ ସାଧନକରି ଆସିଲାଣି । କିନ୍ତୁ ଦୁର୍ଭାଗ୍ୟ ଯେ ହାନିମାନଙ୍କ ପରେ ଅନ୍ୟ କେହି ବରପୁତ୍ର ଏଯାବତ୍ ଏହି ଚିକିତ୍ସା ପ୍ରଣାଳୀ କ୍ଷେତ୍ରରେ ଆବିର୍ଭୂତ ହୋଇ ଏହାର କ୍ରମ ବିକାଶ କରିବାରେ ଉଲ୍ଲେଖନୀୟ କାର୍ଯ୍ୟ କରିନାହାନ୍ତି ।

ଏହି ମହାପୁରୁଷ ଶେଷରେ ପ୍ୟାରୀସ୍ ନଗରୀରେ ୧୮୪୩ ମସିହା ଜୁଲାଇ ଦୁଇ ତାରିଖ ଦିନ ଏକ ରୋଗୀର ଚିକିତ୍ସା କରୁଥିବା ଅବସରରେ ଦେହତ୍ୟାଗ କଲେ । ତାଙ୍କ ମୃତ୍ୟୁ ଫଳରେ ପୃଥିବୀ ଏକ ଯୋଗଜନ୍ମାଙ୍କୁ ହରାଇଲ ।।





# ଗ୍ରେଗର ଯୋହାନ୍ ମେଣ୍ଡେଲ୍ ଓ ଅନୁବଂଶ ବିଜ୍ଞାନ

୧୮୨୨ – ୧୮୮୪ ମସିହା

ଛୁଆଟିଏ ଜନ୍ମହେଲେ କିଏ କହେ ଇଏ ବାପ ଭଳି ହେବ, କିଏ କହେ ଆଖି ଦୁଇଟି କିନ୍ତୁ ମା'ପରି ହୋଇଛି । ଆଉ କେହି ଛୁଆକୁ ଭଲଭାବେ ନିରୀକ୍ଷଣ କରିବା ପରେ କହନ୍ତି, ନାକଟି ତା'ର ମାମୁଁ ଭଳି ହେବ । କିଏ ବା କହେ-ପାଦ ଦୁଇଟି

ତା' ଜେଜେବାପାଙ୍କ ପାଦ ପରି । ତେବେ ବାପ-ମା' ଭିନ୍ନ ଏତେ ଲୋକଙ୍କ ଚରିତ୍ର ସତରେ କ'ଣ ଛୁଆ ଦେହରେ ଥାଏ ? ଯଦି ଥାଏ, ଏହା କିପରି ସମ୍ଭବ ହୁଏ ?

ଜନ୍ମ ସହିତ ଲକ୍ଷଣର ଏହି ସଂପର୍କ ପ୍ରଥମେ ଯେଉଁ ବୈଜ୍ଞାନିକ ପ୍ରତିପାଦିତ କରି ଏହାର ବିଧାନମାଳା ରଚନା କରିଥିଲେ ସେ ହେଉଛନ୍ତି ଗ୍ରେଗର ଯୋହାନ୍ ମେଣ୍ଡେଲ୍ । ଅନ୍ୟାନ୍ୟ ବୈଜ୍ଞାନିକମାନଙ୍କ ପରି ବ୍ୟୟବହୁଳ ବିଜ୍ଞାନାଗାର ତାଙ୍କର ନଥିଲା । ନିଜ ବାଡ଼ି ବଗିଚ୍ଚାରେ ଭିନ୍ନ ଭିନ୍ନ ପ୍ରକାରର ମଟର ମଞ୍ଜି ଓ ଶିମ୍ବ ମଞ୍ଜିକୁ ନେଇ ତାଙ୍କର ପରୀକ୍ଷା ଆରମ୍ଭ ହୋଇଥିଲା । ତାଙ୍କର ପରୀକ୍ଷାଗୁଡ଼ିକୁ ନେଇ ସେ ଯେଉଁ ସତ୍ୟର ସନ୍ଧାନ ପାଇଥିଲେ ତାହା କେବଳ ଉଦ୍ଭିଦ ଜଗତ ନୁହେଁ ସମଗ୍ର ଜୀବଜଗତ ପାଇଁ ପ୍ରଯୁଜ୍ୟ ବୋଲି ପ୍ରତିପାଦିତ ହୋଇଛି । ମାନବ ଜଗତପାଇଁ ତାଙ୍କ ଦ୍ୱାରା ପ୍ରତିପାଦିତ ସତ୍ୟ ଏ ପର୍ଯ୍ୟନ୍ତ ଅବିବାଦିତ ଭାବେ ନିଜର ଶ୍ରେଷ୍ଠତ୍ୱ ବଜାୟ ରଖିପାରିଛି ।

ଏହି ମହାନ୍ ବୈଜ୍ଞାନିକଙ୍କର ଜନ୍ମ ଅଷ୍ଟ୍ରିଆର ହେଞ୍ଜାନ୍‌ଡ୍ରୋପ ଠାରେ ୧୮୨୨ ମସିହା ଜୁଲାଇ ୨୨ ତାରିଖରେ ହୋଇଥିଲା । ପରେ ସେ ଅଷ୍ଟ୍ରିଆରେ ଏକ ମଠାଧୀଶ ଭାବେ ଅଧିଷ୍ଠିତ ହେଲେ । ପ୍ରଥମରୁ ସେ ଜଣେ ପ୍ରକୃତି ବନ୍ଧୁ ଓ ପ୍ରକୃତି ତତ୍ତ୍ୱବିତ୍ ଥିଲେ । ନିଜ ମଠ ବାଡ଼ିରେ ବିଭିନ୍ନ ପ୍ରକାରର ଗଛଲତା ଲଗାଇବା, ପାଣିଦେବା, ପୋକ ମାରିବା ଆଦି ପ୍ରତ୍ୟେକ କାର୍ଯ୍ୟ ସେ ନିଜେ କରୁଥିଲେ । ବଗିଚ୍ଚ ଭିତରେ ସେ କାମ କଲାବେଳେ ଏତେ ମଗ୍ନ ରହୁଥିଲେ ଯେ, ସେତେବେଳେ ତାଙ୍କୁ ଦେଖିଲେ ଜଣାଯିବ ସେ ଯେପରି ଏକ ଭିନ୍ନ ମଣିଷ । ଗଛ ମୂଳରୁ ଘାସ ବାଛିଲା ବେଳେ ଅବା ଗଛରେ ସାର ଦେଲାବେଳେ ସେ ଗଛ ସହିତ କ'ଣ ସବୁ କଥାବାର୍ତ୍ତା ହେଲାପରି ଜଣାପଡ଼େ ।

ଏମିତି ବୃକ୍ଷଲତା ମାନଙ୍କ ସହ ନିବିଡ଼ ସମ୍ପର୍କରୁ ତାଙ୍କ ଦ୍ୱାରା ପ୍ରବର୍ତ୍ତିତ "ମେଣ୍ଡଲିଆନ୍ ଲ' ଅଫ ଜେନେଟିକ୍ସ୍" ର ପ୍ରଥମ ସୂତ୍ରପାତ ହେଲା । ବିଭିନ୍ନ ପ୍ରକାରର ଶିମ୍ବ ଓ ମଟର ଗଛ ଲଗାଇ ତାହାର ବୃଦ୍ଧି ଓ ବିକାଶ ସେ ଅନେକ ପୁରୁଷ ଧରିଲକ୍ଷ କଲେ । କେଉଁ ଗଛ କେତେ ଲମ୍ବ ହେଉଛି, ତା'ର ଫୁଲ କେଉଁଠି ହେଉଛି, ମଞ୍ଜିର ରଙ୍ଗ ଓ ଆକାର କ'ଣ

ହେଉଛି ଇତ୍ୟାଦି ଚରିତ୍ରକୁ ସେ ବାରମ୍ବାର ଲକ୍ଷ୍ୟ କଲେ । ଗୋଟିଏ ପ୍ରକାରର ଶିମ୍ବ ଅନ୍ୟ ପ୍ରକାର ଶିମ୍ବ ସହିତ ପ୍ରଜନନ ହେବା ଫଳରେ ଯେଉଁ ଦୋମିଶା ଶିମ୍ବର ସୃଷ୍ଟି ହୁଏ ସେଥିରେ କେଉଁ କେଉଁ ପରିବର୍ତ୍ତନମାନ ହେଉଛି, ତାହା ବାରମ୍ବାର ପରୀକ୍ଷାକରି ତାଙ୍କ ପର୍ଯ୍ୟବେକ୍ଷଣର ଫଳାଫଳକୁ ଟିପିରଖିଲେ । ଶେଷରେ ବର୍ଷ ବର୍ଷ ବ୍ୟାପି କରିଥିବା ସମୀକ୍ଷାରୁ ଯେଉଁ ସିଦ୍ଧାନ୍ତରେ ସେ ଉପନୀତ ହେଲେ ସେଇଥିରୁ ଜନ୍ମନେଲା ଆଧୁନିକ ଅନୁବଂଶ ବିଜ୍ଞାନ । ସେଥିପାଇଁ ସେ ଜେନେଟିକ୍ସ୍ ବା ଅନୁବଂଶ ବିଜ୍ଞାନର ଜନ୍ମଦାତା ରୂପେ ପରିଚିତ ।

ପ୍ରଥମେ ସେ ଲମ୍ବ ବା ଡେଙ୍ଗା ଶିମ୍ବ ସହିତ ଖର୍ବକାୟ ବା ଗେଡ଼ା ଶିମ୍ବ ଲତାର ଏକ ସଙ୍କରୀ ସଙ୍ଗମ କରାଇ ସେଥିରୁ ଉତ୍ପନ୍ନ ମଞ୍ଜି ସଂଗ୍ରହ କଲେ । ସେହି ମଞ୍ଜିରୁ ଯେଉଁ ଶିମ୍ବଲତା ଉତ୍ପନ୍ନ ହେଲା ସେଗୁଡ଼ିକ ସବୁ ଲମ୍ବ ଜାତିର ହେଲା । ପୁନଶ୍ଚ ଏହି ସଙ୍କର ଜାତୀୟ ଶିମ୍ବକୁ ପରଷ୍ପର ସହିତ ସଙ୍କରୀ ସଙ୍ଗମ କରାଇବାରେ ଦ୍ୱୀତୀୟ ପୁରୁଷ ବା ଦ୍ୱିତୀୟ-ଜନନରେ ଯେଉଁ ଲତା ସୃଷ୍ଟି ହେଲା ତନ୍ମଧ୍ୟରୁ ଲମ୍ବ ଓ ଗେଡ଼ା ଉଭୟ ପ୍ରକାରର ଶିମ୍ବଲତା ଜନ୍ମନେଲେ । ଏଥି ମଧ୍ୟରେ ଲମ୍ବ ଓ ଗେଡ଼ା ଶିମ୍ବର ଅନୁପାତ ୩ : ୧ ହେଲା । ଏହି ପରୀକ୍ଷାରୁ ସେ ଅବଗତ ହେଲେଯେ ଅଧିକ ଉଚ୍ଚତା ଏକ ପ୍ରଭାବକ ଚରିତ୍ର ଓ କମ୍ ଉଚ୍ଚତା ଏକ ଅପ୍ରଭାବୀ ଚରିତ୍ର । ତେଣୁ ଦ୍ୱିତୀୟ ପୁରୁଷ ସଙ୍କରୀ ସଙ୍ଗମ ବେଳେ ଅପ୍ରଭାବୀ ବା ପଶ୍ଚାତଗାମୀ ଚରିତ୍ରର ପ୍ରଭାବ କମିଯାଉଛି ।

ସେହିପରି ଅନ୍ୟ ଏକ ପରୀକ୍ଷାରେ ସେ ଅନ୍ୟ ଦୁଇ ପ୍ରକାରର ଶିମ୍ବ ମଞ୍ଜି ନେଲେ । ଗୋଟିଏ ଗୋଲାକାର, ମସୃଣ ଓ ହଳଦିଆ ରଙ୍ଗ ବିଶିଷ୍ଟ ଏବଂ ଅନ୍ୟଟି କୁଞ୍ଚିତ, ଅନିୟମିତ ଆକୃତି ଓ ସବୁଜ ରଙ୍ଗର । ଏହି ଦୁଇ ପ୍ରକାରର ଶିମ୍ବ ଫୁଲକୁ ସଙ୍କରୀ ସଙ୍ଗମ କରାଇବାରେ ସେ ଯେଉଁ ମଞ୍ଜି ଗୁଡ଼ିକ ପାଇଲେ ସେଗୁଡ଼ିକ ସବୁ ଗୋଲାକାର, ମସୃଣ ଓ ହଳଦିଆ ରଙ୍ଗର । କିନ୍ତୁ ସେହି ମଞ୍ଜିକୁ ପୁଣି ଗଛ କରି ସେହି ଗଛର ସଙ୍କର ମଞ୍ଜିକୁ ପୁନଃ ସଙ୍କରୀ ସଙ୍ଗମ କରାଇବାରେ (ଦ୍ୱିତୀୟ ଜନନ) ସେ ଚାରି ପ୍ରକାରର ମଞ୍ଜି ପାଇଲେ ।

ସେଗୁଡ଼ିକ ହେଲା, ଗୋଲାକାର ଓ ହଳଦିଆ, ଗୋଲାକାର ଓ ସବୁଜ, କୁଞ୍ଚିତ ହଳଦିଆ ଓ କୁଞ୍ଚିତ ସବୁଜ। ଏମାନଙ୍କର ଅନୁପାତ ଥିଲା ୯:୩:୩:୧, ଏହି ପରୀକ୍ଷାରୁ ସେ ଜାଣିଲେ ଯେ ପୂର୍ବୋକ୍ତ ଦୁଇପ୍ରକାରର ମଞ୍ଜି ମଧ୍ୟରେ ହଳଦିଆ ଓ ଗୋଲାକାର ପ୍ରକୃତି ପ୍ରଭାବକ ଓ କୁଞ୍ଚିତ ସବୁଜ ପ୍ରକୃତି ଅପ୍ରଭାବୀ ପ୍ରକୃତିର।

ତାଙ୍କର ପର୍ଯ୍ୟବେକ୍ଷଣ ଗୁଡ଼ିକ ନେଇ ସେ ଏକ ପୃଥିବୀ ବିଖ୍ୟାତ ସନ୍ଦର୍ଭ ଉପସ୍ଥାପନା କଲେ। ୧୮୬୫ ମସିହାରେ ସେ ଅନୁବଂଶ ବିଜ୍ଞାନର ପ୍ରଥମ ବିଧାନମାଳା ରଚନା କରି ନିମ୍ନଲିଖିତ ତିନିଗୋଟି ପ୍ରଧାନ ନିୟମ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରାଇଲେ।

୧. ପ୍ରଭାବକ ଚରିତ୍ର : ଯଦି ଦୁଇଟି ଭିନ୍ନ ଜାତି ମଧ୍ୟରେ ସଙ୍କରୀ ସଙ୍ଗମ କ୍ରିୟା ସମ୍ପାଦିତ ହୁଏ ତେବେ ପ୍ରଥମ ଜନନ ସଙ୍କର ମାଧ୍ୟମରେ କେବଳ ଗୋଟିଏ ଜାତିର ଚରିତ୍ରର ପରିସ୍ଫୁଟନ ହୋଇଥାଏ। ଯେଉଁ ଜାତିର ଚରିତ୍ର ସଙ୍କରଠାରେ ପରିଲକ୍ଷିତ ହୁଏ ସେ ଜାତି ପ୍ରଭାବକ ଏବଂ ଯେଉଁ ଜାତିର ଚରିତ୍ର ଅପ୍ରକାଶିତ ରହିଯାଏ ତାହାକୁ ଅପ୍ରଭାବୀ କୁହାଯାଏ।

୨. ପୃଥକୀକରଣ : ବିଷମତା ଥିବା ଦୁଇଟି ଚରିତ୍ର ମଧ୍ୟରେ ପ୍ରଜନନ କରାଇଲେ ଦୁହିଁଙ୍କ ଚରିତ୍ରର ଆନ୍ତଃମିଶ୍ରଣ ହୁଏନାହିଁ। ବରଂ ଉଭୟଙ୍କ ସ୍ୱତନ୍ତ୍ରତା ବଜାୟ ରହେ।

୩. ସ୍ୱାଧୀନ ଶ୍ରେଣୀ ବିଭାଗ ପଦ୍ଧତି : ଏକ ବା ତତୋଧିକ ଅବସ୍ଥାରେ ବୈଷମ୍ୟ ଥିବା ଦୁଇଟି ଜାତି ମଧ୍ୟରେ ପ୍ରଜନନ ଫଳରେ ଯେଉଁ ସବୁ ସଙ୍କର ଗୁଡ଼ିକ ସୃଷ୍ଟି ହୁଅନ୍ତି ତନ୍ମଧ୍ୟରେ ପ୍ରତ୍ୟେକ ଅନୁପାତ ଅନୁଯାୟୀ ନିଜ ନିଜର ଚରିତ୍ର ସ୍ୱାଧୀନ ଭାବେ ପ୍ରାପ୍ତ ହୁଅନ୍ତି। ତାଙ୍କ ଉପରେ ଅନ୍ୟ ସବୁ ଚରିତ୍ରର କୌଣସି ପ୍ରଭାବ ନଥାଏ। ଉଦାହରଣ ସ୍ୱରୂପ ହଳଦିଆ ଗୋଲ ମଞ୍ଜି ଓ ସବୁଜ କୁଞ୍ଚିତ ମଞ୍ଜି

ଶିମ୍ବଲତା ମଧ୍ୟରେ ପ୍ରଜନନ ଫଳରେ ଯେଉଁ ଗ୍ଧରି ପ୍ରକାରର ମିଶ୍ରିସୃଷ୍ଟି ହେଉଛି ସେ ସବୁ ପ୍ରତ୍ୟେକ ସ୍ୱତନ୍ତ୍ର ଏବଂ କୌଣସି ଶ୍ରେଣୀର ଅନ୍ୟ ଶ୍ରେଣୀ ଉପରେ ପ୍ରଭାବ ନାହିଁ।

ମେଣ୍ଡେଲ୍ ତାଙ୍କର ବିଧାନମାଳା ଘୋଷଣା କରିବାର ଅନେକ ବର୍ଷପରେ ଜଣାପଡ଼ିଲା ଯେ, ଜୀବକୋଷ ମଧ୍ୟରେ ଥିବା 'ଜିନ୍' ହିଁ ଏହି ସବୁ ଚରିତ୍ର ବା ପ୍ରକୃତିର ବାହକ। ଉଦ୍ଭିଦଜଗତରେ ମେଣ୍ଡଲ୍ ସିନା ନିଜର ଗବେଷଣା କରିଥିଲେ କିନ୍ତୁ ସମଗ୍ର ପ୍ରାଣୀ-ଜଗତ ପାଇଁ ତାଙ୍କ ଦ୍ୱାରା ପ୍ରଣୀତ "ମେଣ୍ଡେଲିଆନ୍ ନିୟମାବଳୀ" ପ୍ରଯୁଜ୍ୟ।

ମଣିଷର ପ୍ରତ୍ୟେକ ଜୀବକୋଷର ପ୍ରାଣ କେନ୍ଦ୍ର ହେଉଛି ନ୍ୟୁକ୍ଲିଓ ବା କେନ୍ଦ୍ରକ। ତା ମଧ୍ୟରେ ଯେଉଁ କ୍ରୋମୋଜୋମ ରହିଛି ତା'ରି ଉପରେ ଏକ ଗୁଣ ସୂତ୍ର/ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ଜିନ୍ ବା ଗୁଣସୂତ୍ର ବିସ୍ତାରିତ। ଏହି ଜିନ୍ ହିଁ ଉତ୍ତରାଧିକାରୀ ସୂତ୍ରରେ ବାପ-ମାଙ୍କ ଠାରୁ ଶିଶୁ ଦେହକୁ ଆସିଥାଏ। ତେଣୁ ବାପ-ମାଙ୍କ ଚରିତ୍ରର ଅନେକ ପରିପ୍ରକାଶ ଶିଶୁ ଦେହରେ ଘଟିଥାଏ। ଅନ୍ୟ ପ୍ରକାରେ କହିଲେ ଉତ୍ତରାଧିକାର ପ୍ରାପ୍ତିର ପ୍ରଥମ ଏକକ ହିଁ 'ଜିନ୍'।

ତାଙ୍କ ଗବେଷଣାରେ ସଫଳତାର ପ୍ରଥମ ସ୍ୱାଦ ଗ୍ରହିବା ପରେ ମେଣ୍ଡେଲ ଆହୁରି ଉତ୍ସାହିତ ହେଲେ ଏବଂ ଏହି ପ୍ରଜନନ ଏବଂ ଉତ୍ତରାଧିକାର ସମ୍ବନ୍ଧୀୟ ଅନେକ ପରୀକ୍ଷା କରିଗ୍ଲିଲେ। କିନ୍ତୁ ଦୁଃଖର କଥା ଅନେକ ବର୍ଷ ଧରି ତାଙ୍କ ଗବେଷଣାର ମହନୀୟତା ଜନ ସମାଜ ହୃଦୟଙ୍ଗମ କରିପାରିଲା ନାହିଁ। ତେବେ ତାଙ୍କର ମୃତ୍ୟୁପରେ ୧୯୦୦ ମସିହା ବେଳକୁ ବୈଜ୍ଞାନିକ ମାନେ ତାଙ୍କ ଲିଖିତ ସନ୍ଦର୍ଭ ଗୁଡ଼ିକର ମହତ୍ୱ ଜାଣିପାରିଲେ।

ମେଣ୍ଡଲଙ୍କ ପ୍ରଣୀତ ବିଧାନମାଳାରେ ସେ ସ୍ପଷ୍ଟଭାବେ ଦର୍ଶାଇଛନ୍ତି ଯେ ସନ୍ତାନ ସନ୍ତତି ମାନଙ୍କୁ ବାପ-ମା'ଙ୍କର ପ୍ରାୟ ଅଧିକାଂଶ ସ୍ୱଭାବ ପ୍ରାପ୍ତ ହୋଇଥାଏ। ଅବଶ୍ୟ ସାମାନ୍ୟ କେତେକ କ୍ଷେତ୍ରରେ ଅଳ୍ପ କିଛି ସ୍ୱତନ୍ତ୍ରତା ଦେଖାଦେବା ବିଚିତ୍ର ନୁହେଁ। ତେବେ ସନ୍ତାନ ସନ୍ତତି ବାପ-ମା'ଙ୍କର ଅବିକଳ ପ୍ରତିରୂପ ହେବା ମଧ୍ୟ ଅସମ୍ଭବ।

ଏହି ମହାନ ବୈଜ୍ଞାନିକ ତଥା କଥିତ କୌଣସି ବିଜ୍ଞାନଗାରର ସାହାଯ୍ୟ ନନେଇ ବିଶ୍ୱବାସୀଙ୍କୁ ଯେଉଁ ଆଲୋକ ଦେଇଥିଲେ ତା' ଫଳରେ ଆଜି ଅନେକ ରୋଗର କାରଣ ଜାଣିବାରେ ଚିକିତ୍ସକ ମାନଙ୍କୁ ସୁବିଧା ହୋଇଛି। ବଂଶଗତ ରୋଗ ମାନଙ୍କର ଉଦ୍ଭବ କିପରି ହୁଏ ତାହାର ସୂତ୍ର ପ୍ରଥମେ ମେଣ୍ଡେଲ୍‌ଙ୍କ ବିଧାନ ମାଳାରେ ହିଁ ଉପସ୍ଥାପିତ ହୋଇଥିଲା।

ଏହି ବୈଜ୍ଞାନିକ ତାଙ୍କ ଜୀବଦ୍ଦଶା ମଧ୍ୟରେ ବିଶେଷ ପ୍ରତିଷ୍ଠା ଲାଭ କରିପାରିନଥିଲେ। ନିଜେ ଜଣେ ମଠାଧୀଶ ଥିବାରୁ ପ୍ରଥମେ ପ୍ରଥମେ ତତ୍‌କାଳୀନ ପ୍ରତିଷ୍ଠିତ ବୈଜ୍ଞାନିକମାନେ ତାଙ୍କ କଥା ଶୁଣିବାପାଇଁ ବିଶେଷ ଗୁରୁତ୍ୱ ଦେଉନଥିଲେ। କିନ୍ତୁ ତାଙ୍କ ମୃତ୍ୟୁର ପ୍ରାୟ ୧୬ ବର୍ଷପରେ ସେମାନଙ୍କ ଦୃଷ୍ଟି ପଡ଼ିଲା ମେଣ୍ଡେଲ୍‌ଙ୍କ ଅନୁବଂଶ ବିଦ୍ୟାର ପ୍ରଥମ ଅଧ୍ୟାୟ ଉପରେ।

ସେତେବେଳେ କିନ୍ତୁ ମେଣ୍ଡଲ୍ ଆଉ ଦୁନିଆରେ ନଥିଲେ। ୧୮୮୪ ମସିହା ଜାନୁଆରୀ ୬' ତାରିଖ ଦିନ ଚେକୋସ୍ଲୋଭାକିଆର ବ୍ରୁନୋ ସହରଠାରେ ସେ ସବୁଦିନ ପାଇଁ ଆଖି ବୁଜି ଦେଇଥିଲେ।





# ଲୁଇ ପାଶ୍ଚର ଓ ଆଧୁନିକ ଜୀବାଣୁତତ୍ତ୍ୱ

୧୮୨୨-୧୮୯୫ମସିହା

ଊନବିଂଶ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ମଣିଷ ବିଭିନ୍ନ ରୋଗ ଜୀବାଣୁ ବିଷୟରେ ଅଜ୍ଞ ଥିଲା । ରୋଗର ଉତ୍ପତ୍ତି ନେଇ ଅନେକ ଅନ୍ଧବିଶ୍ୱାସ ରହିଥିଲା । ଅଭିଶାପ, କୁକର୍ମ କିମ୍ବା ପୂର୍ବଜନ୍ମର କୌଣସି ଫଳ ଅଥବା ଦେବାଦେବୀଙ୍କ ଅସନ୍ତୋଷ ଫଳରେ ରୋଗ

ଦେଖାଦିଏ ବୋଲି ମଣିଷ ଭାବୁଥିଲା । ତେଣୁ କୌଣସି ରୋଗ ଦେଖାଦେଲେ ପୂଜାପାଠ କରି, କାଳେଣୀ ଲଗାଇ କିମ୍ବା ଚେର ମୂଳି ଆଦି ପ୍ରୟୋଗ କରି ରୋଗ ଦୂର କରିବାର ଚେଷ୍ଟା କରାଯାଉଥିଲା । ଫଳରେ ରୋଗୀକୁ ଅଯଥା ଅନେକ କଷ୍ଟ ଭୋଗିବାକୁ ପଡୁଥିଲା । ମଣିଷର ଅନ୍ଧବିଶ୍ୱାସ ଓ ଅଜ୍ଞତା ଯୋଗୁଁ ରୋଗ ଖୁବ୍ ସହଜରେ ବ୍ୟାପକ ହୋଇ ମହାମାରୀ ଆକାର ଧାରଣ କରିବା ଫଳରେ ଅନେକ ସମୟରେ ଗ୍ରାମ ଓ ସହର ସମ୍ପୂର୍ଣ୍ଣ ରୂପେ ମାନବ ଶୂନ୍ୟ ହୋଇଯାଉଥିଲା ।

ମାନବ ସମାଜର ଏହି ଦୁର୍ଦ୍ଦିନ ଅବସ୍ଥାରେ ଜଣେ ମହାତ୍ମା ୧୮୨୨ ମସିହାରେ ଜନ୍ମଗ୍ରହଣ କଲେ ଫ୍ରାନସର ଜୁରା (ଡୋଲ) ଗ୍ରାମରେ । ତାଙ୍କର ନାମ ଥିଲା ଲୁଇ ପାଶ୍ଚର । ତାଙ୍କର ପିତା ସୈନ୍ୟ ବିଭାଗର ଜଣେ କର୍ମଚାରୀ ଥିଲେ । ପିଲାଦିନୁ ପାଶ୍ଚର ଖୁବ୍ ଧୀର ଓ ଶାନ୍ତ ସ୍ୱଭାବର ଥିଲେ । ତାଙ୍କ ପିତା ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିବାରୁ ପିଲାଦିନୁ ପାଶ୍ଚରଙ୍କୁ ନିଜ ପରିବାରର ସମସ୍ତ ସମସ୍ୟା ନିଜେ ସମାଧାନ କରିବାକୁ ପଡୁଥିଲା । ସେ ପ୍ରଥମରୁ ଖୁବ୍ ଚିନ୍ତାଶୀଳ ଥିଲେ । ପ୍ରତ୍ୟେକ ସ୍ଥଳରେ ସେ ଆଗପଛ ବିଚାର କରି କାମ କରୁଥିଲେ । ଫଳରେ ତାଙ୍କର କୌଣସି କାମରେ କେହି ଭୁଲ୍ ବାହାର କରିପାରିବା ସମ୍ଭବ ନଥିଲା । କଳା ପ୍ରତି ପ୍ରଥମରୁ ତାଙ୍କର ଗଭୀର ଅନୁରକ୍ତି ଥିଲା । କିନ୍ତୁ ବିଜ୍ଞାନ ପାଇଁ ସେ ଯେପରି ଭଗ୍ରବାନଙ୍କ ପ୍ରେରିତ ହୋଇଥିଲେ । ତେଣୁ ପରିସ୍ଥିତିର ଚାପରେ ସେ ବିଜ୍ଞାନର ଛାତ୍ର ହେଲେ ।

ପାଠପଢ଼ାରେ ତାଙ୍କର ଏକାଗ୍ରତା ଫଳରେ ମାତ୍ର ୨୦ ବର୍ଷ ବୟସରେ ସେ ବି.ଏସ୍.ସି ପାସ୍ କଲେ । ୧୮୪୩ ମସିହାରେ ପ୍ରଫେସର ଏ.ଜେ.ବାଲର୍ଡ଼ଙ୍କ ଅଧୀନରେ ସେ ତାଙ୍କ ରସାୟନାଗାରରେ ସହକାରୀଭାବେ ନିଯୁକ୍ତି ପତ୍ର ପାଇଲେ । ଛାତ୍ର ଅବସ୍ଥାରୁ ହିଁ ତାଙ୍କର ପରାକାଷ୍ଠାର ପରିଚୟ ମିଳି ସାରିଥିଲା । ପରେ ଯେତେବେଳେ ସେ ରସାୟନାଗାରରେ କାମ କରିବାକୁ ସୁଯୋଗ ପାଇଲେ, ତାଙ୍କ ବୈଜ୍ଞାନିକ ପ୍ରାଣ ନୂତନ ଆଲୋକର ସନ୍ଧାନରେ ଆନ୍ଦୋଳିତ ହେଲା । କୀଟପତଙ୍ଗ ମାନଙ୍କଠାରୁ ଆରମ୍ଭ କରି ଗୃହ ପାଳିତ ପଶୁପକ୍ଷୀ ଓ ମଣିଷ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବଜନ୍ତୁ ଓ ସେମାନଙ୍କ

ଦେହରେ ହେଉଥିବା ରୋଗ ଗୁଡ଼ିକ ଉପରେ ସେ ନିଜେ ନିଜେ ଗବେଷଣା କରିବାକୁ ଲାଗିଲେ। ପ୍ରତ୍ୟେକ ଜୀବଙ୍କ ସ୍ୱାସ୍ଥ୍ୟ ସମସ୍ୟା ତାଙ୍କ ମନରେ ଅସୁମାରୀ ପ୍ରଶ୍ନ ସୃଷ୍ଟିକଲା। ତାଙ୍କର ଅନୁସନ୍ଧିତ୍ସା ସବୁ ପ୍ରଶ୍ନର ସମାଧାନ କରିବାରେ ଲାଗିପଡ଼ିଲା। ଶେଷରେ ଅନେକ କ୍ଷେତ୍ରରେ ସେ କୃତକାର୍ଯ୍ୟ ହେଲେ।

ରସାୟନ ବିଦ୍ୟାରେ ପରୀକ୍ଷା କରିବା ସମୟରେ ତାଙ୍କର ଅନେକ ପର୍ଯ୍ୟବେକ୍ଷଣ ବିଖ୍ୟାତ ରସାୟନବିତ୍ ମାନଙ୍କ ଦ୍ୱାରା ଆଦୃତ ହେଲା। ମାତ୍ର ୨୬ ବର୍ଷ ବୟସରେ ସେ ସ୍ଫଟୀକ ସହିତ ଆଲୋକ ରଶ୍ମିର ସମ୍ପର୍କକୁ ନେଇ କେତେକ ନୂତନ ତଥ୍ୟ ଯୋଗାଇଲେ।

ପାଶ୍ଚରଙ୍କ ପରୀକ୍ଷା ଓ ଗବେଷଣା ଧୀରେ ଧୀରେ ପ୍ରସାରିତ ହେଲା ବିଭିନ୍ନ କ୍ଷେତ୍ରରେ। ସେ ଲକ୍ଷ୍ୟକଲେ ଯେ ସୁରା ଓ ଦୁଗ୍ଧ ଖୋଲାରେ ରହିଲେ ଅମ୍ଳିଭବନ ପ୍ରକ୍ରିୟା ଫଳରେ ଅରୁଚିକର ହୋଇ ନଷ୍ଟ ହୋଇଯାଉଛି। ଏହି ପ୍ରକ୍ରିୟାର କାରଣ କ'ଣ ଜାଣିବାକୁ ସେ ପରୀକ୍ଷା କରି ଦେଖିଲେ ଯେ, ଏହା ଏକସୂକ୍ଷ୍ମାତିସୂକ୍ଷ୍ମ ଜୀବ ଯୋଗୁଁ ସମ୍ଭବ ହେଉଛି। କହିବାକୁ ଗଲେ ଜୀବାଣୁ ତତ୍ତ୍ୱର ଏହାର ପ୍ରଥମ ପରୀକ୍ଷା ଓ ପର୍ଯ୍ୟବେକ୍ଷଣ। ଏ ଦିଗରେ ତାଙ୍କର ଅନ୍ୟ ଏକ ପର୍ଯ୍ୟବେକ୍ଷଣ ରହିଛି। ଅନ୍ତଃସଂସ୍ରବଣ ପାଇ ଥିବା ଅର୍କ ବା କଷାୟ ଯଦି ଖୋଲା ରଖାଯାଏ ତେବେ ବାୟୁ ମଣ୍ଡଳର ସଂସ୍ପର୍ଶରେ ଆସି ଏହା ପଚିତ ବା ଗଳିତ ହୋଇଥାଏ। କିନ୍ତୁ ଏହି ଅର୍କକୁ ଠିକଭାବେ ଠିପି ବନ୍ଦ ରଖିଲେ ଗଳନ ପ୍ରକ୍ରିୟା ହୋଇପାରେ ନାହିଁ। ଏଥିରୁ ସେ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ବାୟୁମଣ୍ଡଳରେ ଥିବା ସୂକ୍ଷ୍ମ ଜୀବ ଗୁଡିକ ଗଳନ କ୍ରିୟାରେ ସାହାଯ୍ୟ କରିଥାଆନ୍ତି। ଏହି ପର୍ଯ୍ୟବେକ୍ଷଣରୁ ଜୀବାଣୁ ମାନଙ୍କ ଅବସ୍ଥିତି ସମ୍ପର୍କରେ ମଣିଷ ପ୍ରଥମ କରି ଜାଣିବାକୁ ପାଇଲା।

ସୁରା ମଧ୍ୟରେ ଏକ ପରାଙ୍ଗ ପୁଷ୍ଟ ଜୀବାଣୁ ମିଶି ଏହାକୁ ଖଟା କରିଦିଏ ଏବଂ ଏହା ପିଇବା ପାଇଁ ଅନୁପଯୁକ୍ତ ହୋଇଯାଏ। ପାଶ୍ଚର ପରୀକ୍ଷା କରି ଦେଖିଲେ ଯେ, ଏହାକୁ ୫୦ ଡିଗ୍ରୀ ରୁ ୬୦ ଡିଗ୍ରୀ ସେଣ୍ଟିଗ୍ରେଡ୍ ପର୍ଯ୍ୟନ୍ତ

ଉତପ୍ତ କରିଦେଲେ ଏହି ଜୀବାଣୁ ନଷ୍ଟ ହୋଇଯାଏ ଏବଂ ଏହା ପୁନଶ୍ଚ ପାନୀୟଯୋଗ୍ୟ ହୋଇପାରେ । ଏହି ପଦ୍ଧତି ଦୁଗ୍ଧ ସମେତ ଅନ୍ୟାନ୍ୟ ଅନେକ ପାନୀୟ ମାନଙ୍କ ପାଇଁ ପ୍ରଯୁଜ୍ୟ। ପାଶ୍ଚର ଏହାକୁ ଆବିଷ୍କାର କରିଥିବାରୁ ପାନୀୟ ଗୁଡ଼ିକ ଜୀବାଣୁମୁକ୍ତ ରଖିବାର ଏହି ପଦ୍ଧତିକୁ "ପାଶ୍ଚରାଇଜେସନ୍" କୁହାଯାଏ। ଦୁଗ୍ଧକୁ ୧୪୩ ଡିଗ୍ରୀ ସେଣ୍ଟିଗ୍ରେଡ଼କୁ ଉତପ୍ତ କରାଇ ସେହି ଅବସ୍ଥାରେ ପ୍ରାୟ ଅଧ ଘଣ୍ଟାଏ କାଳ ରଖିବା ପରେ ହଠାତ୍ ତାହାକୁ ୫୦ ଡିଗ୍ରୀ ସେଣ୍ଟିଗ୍ରେଡକୁ ଶୀତଳୀକରଣ କରିବାକୁ ପଡ଼ିଥାଏ। ଏହି ପଦ୍ଧତିରେ ରୋଗଜୀବାଣୁ ଗୁଡ଼ିକ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଏ ଏବଂ ଏହା ରହଣିଆ ବା ଗନ୍ଧିଆ ହେବାର ଭୟ ରହେନାହିଁ। ଏହା ଫଳରେ ଦୁଗ୍ଧରେ ଥିବା ପୁଷ୍ଟିସାର ଓ ଶ୍ୱେତସାର ଅଂଶର କୌଣସି ପରିବର୍ତ୍ତନ ହୁଏ ନାହିଁ। କିନ୍ତୁ ସ୍ନେହସାର, କିମ୍ବା ଅନୁଘଟକ (ଏନ୍‌ଜାଇମ୍) ଓ ଜୀବସାର ମାନଙ୍କ ମଧ୍ୟରୁ କେତେକ ନଷ୍ଟ ହୋଇଥାଏ। ତେବେ ଏହି ପଦ୍ଧତିର ପ୍ରଭାବରେ ଦୁଗ୍ଧ ଜୀବାଣୁମୁକ୍ତ ହେଉଥିବାଯୋଗୁଁ ଅନ୍ୟ ଯେଉଁ ସବୁ ଉପାଦାନର ଅଭାବ ଘଟେ ତାହାକୁ ଉପେକ୍ଷା କରାଯାଇପାରେ।

ପାଶ୍ଚରଙ୍କ ଜୀବାଣୁତତ୍ତ୍ୱ ଧୀରେ ଧୀରେ ନୂତନ ତଥ୍ୟମାନ ଯୋଗାଇଲା। ସେତେବେଳେ ରେଶମ ପୋକ ମାନଙ୍କ ଦେହର ଏକପ୍ରକାର ଜୀବାଣୁ ଲାଗିବା ଫଳରେ ଅସଂଖ୍ୟ ରେଶମ ପୋକ ମରିଯାଉଥିଲେ। ଫଳରେ ରେଶମ ଶିଳ୍ପରେ ଘୋର କ୍ଷତି ଘଟୁଥିଲା। ପରୀକ୍ଷା ଦ୍ୱାରା ଜଣାପଡ଼ିଲା ଯେ, ରେଶମ ପୋକ ଯେଉଁ ତୁତ ଗଛରେ ବଢ଼ନ୍ତି, ସେହିଗଛରେ ସନ୍ତସନ୍ତିଆ ପରିବେଶରେ ଏକ ପ୍ରକାର ଜୀବାଣୁ ବଢ଼ିବାକୁ ସୁଯୋଗ ପାଆନ୍ତି। ସେହି ଜୀବାଣୁ ହିଁ ରେଶମ ପୋକକୁ ନଷ୍ଟ କରିଥାଆନ୍ତି। ତେଣୁ ପାଶ୍ଚର ମତ ଦେଲେ ଯେ, ତୁତ ଗଛର ପରିବେଶକୁ ଉନ୍ନତ କରାଗଲେ ଏହି ସମସ୍ୟାର ସମାଧାନ ହୋଇଯିବ।

ତାଙ୍କର ଅନ୍ୟ ଏକ ବିଶିଷ୍ଟ ଉଦ୍ଭାବନ ହେଉଛି ଗୋ-ମେଷାଦି ପଶୁ ମାନଙ୍କ ଠାରେ ହେଉଥିବା ପ୍ଲୀହା ଜ୍ୱରର ଜୀବାଣୁ। ଏହି ପ୍ଲୀହାଜ୍ୱର ବା ଆନ୍ଥ୍ରାକସ୍ ଜ୍ୱର ହେତୁ ଗୋଠ ଗୋଠ ଗାଈ ଓ ମେଷ ମୃତ୍ୟୁମୁଖରେ

ପଡୁଥିଲେ। ପାଶ୍ଚର ଘୋଷଣା କଲେ ଯେ, ଏହି ରୋଗର ଏକ ଜୀବାଣୁ ରହିଛି। କେବଳ ସେତିକି ନୁହେଁ ଏ ରୋଗରୁ କିପରି ଗୃହପାଳିତ ପଶୁ ମାନଙ୍କୁ ରକ୍ଷା କରାଯାଇପାରିବ ତା'ର ଉପାୟ ମଧ୍ୟ ସେ ପ୍ରଥମ କରି ଜଣାଇଲେ। ଏହି ଜୀବାଣୁକୁ ନେଇ ପ୍ରାୟ ୪୨ ଡିଗ୍ରୀ ସେଣ୍ଟିଗ୍ରେଡ୍ ଉତ୍ତାପରେ ଯଦି କୃତ୍ରିମ ଗ୍ରୁଷ କରାଯାଏ ତେବେ ଏହାର ଶକ୍ତିର ହ୍ରାସ୍ୱୀକରଣ ହୋଇଥାଏ। ଏହି ଦୁର୍ବଳ ଜୀବାଣୁକୁ ନେଇ ସୁସ୍ଥ ପଶୁ ଦେହରେ ଇଂଜେକ୍‌ସନ୍ ଦ୍ୱାରା ପ୍ରବେଶ କରାଇଲେ, ସେହି ପଶୁକୁ ଆଉ ରୋଗ ହୁଏ ନାହିଁ।

ଅନ୍ୟ ଏକ ଭୟାନକ ରୋଗର କାରଣ ଓ ନିରାକରଣ ମଧ୍ୟ ପାଶ୍ଚର କରିଥିଲେ। ସମସ୍ତେ ଜାଣନ୍ତି ପାଗଳା କୁକୁର, ବିଲୁଆ ଇତ୍ୟାଦି କାମୁଡ଼ିଲେ ଜଳାତଙ୍କ ରୋଗ ହୋଇଥାଏ। ଏହା ଏକ ଭୂତାଣୁ ଦ୍ୱାରା ସଂକ୍ରମିତ ହୁଏ ଏବଂ ବିନା ଚିକିତ୍ସାରେ ଏଥିରୁ ବଞ୍ଚିବା ଅସମ୍ଭବ। ଏହି ଭୂତାଣୁ ଖୁବ୍ ଶୀଘ୍ର ସ୍ନାୟୁ ପ୍ରଣାଳୀକୁ ଆକ୍ରମଣ କରେ। ପ୍ରଥମ କରି ଏହି ଭୁତାଣୁକୁ ସେ ବିଛିନ୍ନ କରି ତାର ଶକ୍ତି ହ୍ରାସ୍ୱୀକରଣ କରିଲେ। ପରୀକ୍ଷା ସ୍ୱରୂପ ସେ ସୁସ୍ଥ କୁକୁର ଦେହରେ ଏହି ଶକ୍ତି ହ୍ରାସ ପାଇଥିବା ଭୂତାଣୁକୁ ପ୍ରବେଶ କରାଇଲେ। ସେହି କୁକୁରକୁ ପାଗଳା କୁକୁର କାମୁଡ଼ିଲେ ମଧ୍ୟ ତାହାକୁ ଜଳାତଙ୍କ ରୋଗ ହେଲାନାହିଁ। ତା'ପରେ ଏହି ଉଦ୍ଭାବନକୁ ସେ ମଣିଷଠାରେ ପ୍ରୟୋଗ କରିବାକୁ ଚାହିଁଲେ। ଜଳାତଙ୍କ ରୋଗୀ ଭାବେ ଯେଉଁ ବ୍ୟକ୍ତି ପ୍ରଥମେ ତାଙ୍କଦ୍ୱାରା ଚିକିତ୍ସିତ ହେଲେ ତାଙ୍କ ନାମ ଜୋସେଫ୍ ମେଷ୍ଟର। ଆନନ୍ଦର କଥା ଯେଉଁ ରୋଗ ଆଜିଯାଏଁ ଅଜେୟ ଥିଲା, ଏହି ଟୀକା (ଔଷଧ) ପ୍ରୟୋଗ ପରେ ସେ ରୋଗୀ ସୁସ୍ଥ ହୋଇଉଠିଲେ। ପାଶ୍ଚର ଯେତେବେଳେ ତାଙ୍କର 'ରୋଗର କାରଣ ଜୀବାଣୁ' ଏହି ତଥ୍ୟ ପ୍ରକାଶ କଲେ ସମାଜରେ ଅନେକ ଧର୍ମଯାଜକ ତାଙ୍କୁ କଠୋର ସମାଲୋଚନା କଲେ ଏବଂ ତାଙ୍କ ବିରୁଦ୍ଧରେ କଠିନ ଦଣ୍ଡାଦେଶ ହେବା ଆବଶ୍ୟକ ବୋଲି ଯୁକ୍ତିକଲେ। ପ୍ରଥମେ ପ୍ରଥମେ ସେ ଅନେକ ଗ୍ରୁକ୍ଷୁଷ ପ୍ରମାଣ ସହ ତାଙ୍କର ତଥ୍ୟର ପ୍ରତିପାଦନ ଚେଷ୍ଟା କଲେହେଁ ତାଙ୍କୁ ଘୋର ପ୍ରତିବାଦର ସମ୍ମୁଖୀନ ହେବାକୁ ପଡିଲା। କିନ୍ତୁ ପରେ ପରେ ତାଙ୍କ ପରୀକ୍ଷାଗୁଡ଼ିକର ଜନପ୍ରିୟତା ଯେତେବେଳେ ବଢ଼ିବାକୁ ଲାଗିଲା ଧୀରେ ଧୀରେ ସେହି କ୍ରୁର ଧର୍ମଯାଜକମାନେ ତାଙ୍କ ପଥରୁ ଅପସରିଗଲେ।

ତାଙ୍କର ସଫଳତାର କାହାଣୀ ଖୁବ୍ ଶୀଘ୍ର ସାରା ବିଶ୍ୱରେ ଚହଳ ପକାଇଦେଲା । ଦେଶ ବିଦେଶରୁ ପ୍ରତିଦିନ ତାଙ୍କ ପାଖରେ ଚିକିତ୍ସା ପାଇବା ପାଇଁ ରୋଗୀମାନେ ଧାଡ଼ି ବାନ୍ଧିଲେ । ଅନେକ ଦେଶର ବୈଜ୍ଞାନିକ ମାନେ କୌତୁହଳୀ ହୋଇ ଉଠିଲେ । ପାଶ୍ଚରଙ୍କ ଗବେଷଣାର କାହାଣୀ ଶୁଣିବାପାଇଁ ଅନେକ ଦେଶରୁ ତାଙ୍କ ପାଖକୁ ନିମନ୍ତ୍ରଣ ଆସିଲା । ଯେଉଁ ଦେଶକୁ ସେ ଗଲେ ସେଠାରେ ସେ ସମ୍ମାନିତ ହେବାକୁ ଲାଗିଲେ ।

ଶେଷରେ ପ୍ୟାରୀସ ନଗରୀର ପାଶ୍ଚର ଇନ୍‌ଷ୍ଟିଚ୍ୟୁଟ୍ ନାମକ ଏକ ବିରାଟ ଅନୁଷ୍ଠାନ, ପଚିଶଲକ୍ଷ ଫ୍ରାଙ୍କ (ଫ୍ରାନସ୍‌ର ମୁଦ୍ରା) ଖର୍ଚ୍ଚରେ ଗଢ଼ାହେଲା । ଋଷିଆର ଜାର୍, ବ୍ରାଜିଲ୍‌ର ସମ୍ରାଟ ଓ ତୁର୍କୀର ସୁଲ୍‌ତାନଙ୍କ ସମେତ ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶର ବିଶିଷ୍ଟ ବ୍ୟକ୍ତି ମାନଙ୍କ ଠାରୁ ଦାନ ସଂଗୃହୀତ ହୋଇ ଏହି ବିପୁଳ ଅର୍ଥର ଆୟୋଜନ କରାଯାଇଥିଲା ।୧୮୮୮ ମସିହାରେ ଏହି ଅନୁଷ୍ଠାନ ମାନବ ସମାଜର କଲ୍ୟାଣ ପାଇଁ କାର୍ଯ୍ୟ ଆରମ୍ଭ କଲା । ବିଭିନ୍ନ ଭୟାନକ ରୋଗ ଜୀବାଣୁ ବିଷୟରେ ଅଧ୍ୟୟନ, ଅଧ୍ୟାପନା ଗବେଷଣା ତଥା ବିଭିନ୍ନ ପ୍ରକାର ଟୀକା ଓ ପ୍ରତିଷେଧକର ଉତ୍ପାଦନ ପାଇଁ ଏହି ଅନୁଷ୍ଠାନ ଉତ୍ସର୍ଗୀକୃତ ।

ଯେଉଁ ମହାନ୍ ବୈଜ୍ଞାନିକଙ୍କ ଅପୂର୍ବ ନିଷ୍ଠା ଓ ଅହର୍ନିଶି ପରିଶ୍ରମ ଫଳରେ କେବଳ ମାନବ ଜଗତ ନୁହେଁ, ସାରା ଜୀବଜଗତ ଉପକୃତ ହେଲା, ଯେଉଁ ଅବିସ୍ମରଣୀୟ ବ୍ୟକ୍ତିତ୍ୱଙ୍କ ସ୍ମୃତିପାଇଁ ଏଡ଼େ ବିରାଟ ଅନୁଷ୍ଠାନ ଗଢ଼ାହେଲା ଯେଉଁ ମହାତ୍ମା ରୋଗ ଓ ଜୀବାଣୁ ବିରୁଦ୍ଧରେ ଯୁଦ୍ଧ କରି କରି ତାଙ୍କ ଜୀବନର ପ୍ରାୟ ଅର୍ଦ୍ଧ ଶତାବ୍ଦୀ କାଳ ବିତାଇ ଦେଲେ ଶେଷରେ ସେ ମଧ୍ୟ ବାର୍ଦ୍ଧକ୍ୟ ଓ ରୋଗର ଶୀକାର ହୋଇଥିଲେ । ଫଳରେ ତାଙ୍କ ସମ୍ମାନାର୍ଥେ ନିର୍ମିତ ବିରାଟ ଗବେଷଣାଗାରରେ ସେ ଦିନେହେଲେ କାମ କରିବାକୁ ସୁଯୋଗ ପାଇ ପାରିନଥିଲେ ।

ଜୀବନକାଳ ମଧ୍ୟରେ ଯେତେବେଳେ ସେ ବିଭିନ୍ନ ରୋଗର କାରଣ ଅନୁସନ୍ଧାନ କରି ତାଙ୍କର ନୂତନ ତଥ୍ୟ ଗୁଡିକ ପ୍ରକାଶ କରୁଥିଲେ କିମ୍ବା

ରୋଗର ପ୍ରତିଷେଧକ ବା ଚିକିତ୍ସା ପାଇଁ ମତାମତ ଦେଉଥିଲେ ସେତେବେଳେ ଅନେକ ସମୟରେ ତୀବ୍ର ସମାଲୋଚନାର ସମ୍ମୁଖୀନ ହୋଇଥିଲେ। କିନ୍ତୁ ସମାଲୋଚନାକୁ ଖାତିର୍ ନକରି ସେ ତାଙ୍କ କର୍ମ ପଥରେ ଆଗେଇ ଯାଉଥିଲେ।

ବିଧିର ବିଧାନ କି ବିଚିତ୍ର ସତେ ! ଯେଉଁ ସମୟରେ ସେ କର୍ମ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ପ୍ରତିଦିନ ମାନବ କଲ୍ୟାଣପାଇଁ ଉଦ୍ଦିଷ୍ଟ ନୂଆ ଉଦ୍ଭାବନ କରୁଥିଲେ, ସଫଳତା ଯେତେବେଳେ ତାଙ୍କ ଚରଣ ସ୍ପର୍ଶ କରୁଥିଲା, ସେତେବେଳେ ଇର୍ଷା କାତର ମାନବ ସମାଜ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଇ ପାରିନଥିଲା। କିନ୍ତୁ ସେ ଯେତେବେଳେ ବାର୍ଦ୍ଧକ୍ୟ ଓ ବିଭିନ୍ନ ରୋଗରେ ପ୍ରପୀଡ଼ିତ ହୋଇ ନିଜର କାର୍ଯ୍ୟ ଶକ୍ତି ହରାଇ ବସିଲେ, ସେତେବେଳେ ଛୁଟିଲା ପ୍ରଶଂସାପତ୍ର ଓ ସମ୍ମାନର ବନ୍ୟା। ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶ ତାଙ୍କୁ ବିଜ୍ଞାନକ୍ଷେତ୍ରରେ ସର୍ବଶ୍ରେଷ୍ଠ ସମ୍ମାନରେ ବିଭୂଷିତ କଲେ। ଫ୍ରାନସ୍ ଦେଶର ପ୍ରତ୍ୟେକ ଉଚ୍ଚସମ୍ମାନ ପାଶ୍ଚରଙ୍କୁ ପ୍ରଦାନ କରାଯାଇଥିଲା।

୧୮୯୨ ମସିହାରେ ତାଙ୍କ ୭୦ତମ ଜନ୍ମ ବାର୍ଷିକୀ ପାଳନ ଅବସରରେ ପ୍ୟାରିସ୍‌ରେ ଯେଉଁ ବୈଜ୍ଞାନିକ ମାନଙ୍କର ସମାବେଶ ହୋଇଥିଲା ସେଠାରେ ପୃଥିବୀର ପ୍ରତ୍ୟେକ ଦେଶରୁ ବୈଜ୍ଞାନିକ ମାନେ ଆସି ପାଶ୍ଚରଙ୍କୁ ତାଙ୍କର ବ୍ୟକ୍ତିଗତ ସମ୍ମାନ ଜ୍ଞାପନ କରିଥିଲେ। ୧୮୯୫ ମସିହା ସେପ୍ଟେମ୍ବର ମାସରେ ବିଜ୍ଞାନ ଆକାଶର ସେହି ପ୍ରଚଣ୍ଡ ପ୍ରତିଭା ଅସ୍ତଗଲେ।

ତାଙ୍କର ମୃତ୍ୟୁ ପରେ ନିର୍ଜୀବ ଶରୀର ହୁଏତ ମାଟିରେ ମିଶିଯାଇଛି, କିନ୍ତୁ ପାଶ୍ଚର ଇନଷ୍ଟିଚ୍ୟୁଟ୍ ମଧ୍ୟରେ ସେ ବଞ୍ଚିଛନ୍ତି ଓ ବଞ୍ଚିଥିବେ ସବୁଦିନପାଇଁ।

●



## ହାନ୍‌ସେନ୍ ଓ କୁଷ୍ଠରୋଗ

୧୮୪୧-୧୯୧୨ ମସିହା

କୁଷ୍ଠ ରୋଗ ଏକ ସଂକ୍ରାମକ ରୋଗ ରୂପେ ଅନାଦି କାଳରୁ ପରିଚିତ। ଭାରତରେ ମନୁସ୍ମୃତି ଓ ଶୁଶ୍ରୁତ ସଂହିତାରେ ଏହି ରୋଗ ବିଷୟ ବର୍ଣ୍ଣିତ ହୋଇଛି। ଗ୍ରୀସ୍ ଦେଶର ବହୁ ପୁରାତନ

ଚିକିତ୍ସକ ଯଥା ହିପୋକ୍ରେଟିସ୍, ଆରିଷ୍ଟଟଲ୍ ଆଦି ଏହି ରୋଗ ବିଷୟ ମଧ୍ୟ ଆଲୋଚନା କରିଛନ୍ତି। ବାଇବେଲ୍ ଧର୍ମ ଶାସ୍ତ୍ରରେ ମଧ୍ୟ ଏହାର ବର୍ଣ୍ଣନା ରହିଛି। କିନ୍ତୁ ଦୁଃଖର କଥା, ପୂର୍ବ କାଳରେ ଏହି ରୋଗ ବିଷୟରେ ଅନେକ ଭ୍ରମଧାରଣା ଥିଲା। ଅନେକଙ୍କ ବିଶ୍ୱାସ ଥିଲା ଯେ, ଦେବାଦେବୀଙ୍କ କୋପ ଓ ଅଭିଶାପରୁ ଏହି ରୋଗ ହୁଏ। ତେଣୁ କୁଷ୍ଠରୋଗୀ ଯେଉଁ ପରିବାରରେ ଥାଏ ସେଠାରେ ବିବାହ କରିବା ମଧ୍ୟ ନିଷିଦ୍ଧ ଥିଲା।

ପ୍ରକୃତ କଥା ହେଉଛି ଯେ, ଏହା ଏକ ସଂକ୍ରମକ ବ୍ୟାଧି ହେଲେହେଁ, ବସନ୍ତ ବା ହଇଜା ପରି ଏତେ ମାରାତ୍ମକ ନୁହେଁ। ଏହା କୌଣସି ଅଭିଶାପ ଯୋଗୁ ନୁହେଁ ବରଂ ରୋଗୀ ସହିତ ସୁଦୀର୍ଘ ଏବଂ ନିବିଡ଼ ସମ୍ପର୍କରୁହିଁ ଅନ୍ୟକୁ ଆକ୍ରମଣ କରିଥାଏ। ରୋଗର ଜୀବାଣୁ ଶରୀରର ସ୍ନାୟୁ, ଚର୍ମ, ଅଣ୍ଡକୋଷ, ଚକ୍ଷୁ ଇତ୍ୟାଦିକୁ ଆକ୍ରମଣ କରେ। ତେବେ ସମାଜରେ ଦେଖାଯାଉଥିବା ରୋଗୀ ମାନଙ୍କ ମଧ୍ୟରୁ କେବଳ ଏକପଞ୍ଚମାଂଶ ସଂକ୍ରାମକ ଅବସ୍ଥାରେ ଥାଆନ୍ତି। ସେମାନେ ମଧ୍ୟ ଉପଯୁକ୍ତ ଚିକିତ୍ସା ଦ୍ୱାରା ଦୁଇ ରୁ ଚାରି ସପ୍ତାହ ମଧ୍ୟରେ ଅସଂକ୍ରାମକ ଅବସ୍ଥାକୁ ଆସିଯାଆନ୍ତି। ସୁଦୂର ଅତୀତରେ ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ଏହି ରୋଗୀ ଦେଖାଯାଉଥିଲେ। କିନ୍ତୁ ୟୁରୋପୀୟ ଦେଶ ମାନଙ୍କରୁ ପ୍ରଥମେ ଏହା ଦୂର କରାଗଲା। ବର୍ତ୍ତମାନ ପୃଥିବୀର (୧୯୮୧) ଗଣନା ଅନୁଯାୟୀ ମୋଟ ୧୨ ନିୟୁତ କୁଷ୍ଠ ରୋଗୀ ଅଛନ୍ତି। ତନ୍ମଧ୍ୟରୁ କେବଳ ଭାରତବର୍ଷରେ ୪ ନିୟୁତ ରୋଗୀ ଅଛନ୍ତି। ଆଫ୍ରିକା ଓ ଏସିଆ ବ୍ୟତୀତ ଦକ୍ଷିଣ ଆମେରିକାରେ ଏହା ଅଧିକ ପରିମାଣରେ ଦେଖାଯାଏ। ପର୍ତ୍ତୁଗାଲ୍, ସ୍ପେନ୍ ଏବଂ ଋଷିଆରେ ଏହା ସାମାନ୍ୟ ପରିମାଣରେ ଏବେବି ରହିଛି।

ମଧ୍ୟଯୁଗ ପର୍ଯ୍ୟନ୍ତ ସମାଜରେ କୁଷ୍ଠରୋଗୀ ମାନଙ୍କୁ ଖୁବ୍ ହୀନଦୃଷ୍ଟିରେ ଦେଖାଯାଉଥିଲା। କେତେକ ଦେଶରେ ସେମାନଙ୍କୁ ସମାଜରୁ ବହିଷ୍କାର କରି ଦ୍ୱୀପାନ୍ତର ପଠାଇ ଦିଆଯାଉଥିଲା। ଫଳରେ ରୋଗର ନିରାକରଣ ପାଇଁ କେହି ଚେଷ୍ଟା କରୁନଥିଲେ। ପ୍ରକୃତରେ କହିବାକୁ ଗଲେ

ଏ'ପ୍ରକାର ରୋଗୀକୁ ସମାଜର ପ୍ରତ୍ୟେକ ବ୍ୟକ୍ତି ଭୟ ଓ ଘୃଣା କରୁଥିଲେ। ସମାଜିକ ନ୍ୟାୟଲାଭରୁ ରୋଗୀ ତ ନିଶ୍ଚିତଭାବେ ବଞ୍ଚିତ ହେଉଥିଲା, ତା'ଛଡ଼ା ପ୍ରତ୍ୟେକ ସମ୍ବେଦନଶୀଳ ମାନବ ଚେତା ବ୍ୟକ୍ତି ରୋଗୀକୁ ରକ୍ଷା କରିବାର କୌଣସି ଉପାୟ ନପାଇ ସବୁବେଳେ ନିଜକୁ ଦୋଷୀ ମନେକରୁଥିଲେ।

ସଭ୍ୟତା ଓ ବିଜ୍ଞାନର ବିକାଶ ସହିତ ମଣିଷର ଚିନ୍ତାଧାରା ସବୁ ଯୁଗରେବଦଳି ଆସିଛି। କୁଷ୍ଠରୋଗ କ୍ଷେତ୍ରରେ ମଧ୍ୟ ସେଇଆ ହେଲା। ପ୍ରଥମେ ୧୮୪୭ ମସିହରେ ଡାନିଏଲ୍-ସାନ୍ ନାମକ ଜଣେ ମାନବ -ବନ୍ଧୁ କୁଷ୍ଠରୋଗପାଇଁ ଆଧୁନିକ ଚିକିତ୍ସା ବିଜ୍ଞାନର ପ୍ରଥମ ହିସାବ ଫର୍ଦ୍ଦ ରଚନା କଲେ। ତାଙ୍କଦ୍ୱାରା ପ୍ରଦତ୍ତ ବିବରଣୀ ସ୍ୱୟଂ ସଂପୂର୍ଣ୍ଣ ନହେଲେ ମଧ୍ୟ ଭବିଷ୍ୟତ ପାଇଁ ଏହା ଆଲୋକ ବର୍ତ୍ତିକାର କାମ କଲା।

ତା'ର ପରବର୍ତ୍ତୀ ଅଧ୍ୟାୟରେ କୁଷ୍ଠରୋଗ ବିଷୟରେ ପ୍ରକୃତ ଏବଂ ସର୍ବ ଜନାଦୃତ ତଥ୍ୟ ପରିବେଶିତ ହେଲା। ତାହାର ରଚୟିତା ହେଉଛନ୍ତି ଜିଃଏଚ୍ଃଏଃହାନ୍‌ସେନ୍। ହାନ୍‌ସେନଙ୍କ ତଥ୍ୟ କୁଷ୍ଠରୋଗର ବ୍ୟାଖ୍ୟା କରିବାରେ ସ୍ୱୟଂସମ୍ପୂର୍ଣ୍ଣ ଥିଲା ଏବଂ ପୂର୍ବର ସମସ୍ତ ଅନ୍ଧବିଶ୍ୱାସ ଓ ଭୁଲ୍ ତଥ୍ୟକୁ ମଣିଷ ମନରୁ ଦୂର କରିଦେଲା। ଫଳରେ କୁଷ୍ଠରୋଗକୁ ତାଙ୍କ ନାମ ଅନୁସାରେ ହାନ୍‌ସେନ୍'ସ ଡିଜିଜ୍ ବୋଲି କୁହଯାଏ।

ଏହି ବୈଜ୍ଞାନିକ ନରଓ୍ୱେର ବର୍‌ଜେନ୍ ଠାରେ ୧୮୪୧ ମସିହାରେ ଜନ୍ମଗ୍ରହଣ କରିଥିଲେ। ଏକ ଗରିବ ପରିବାରରେ ଅଭାବ ଓ ଅନାଟନ ଭିତରେ ବଢ଼ି ଉଠୁଥିବା କିଶୋର ହାନ୍‌ସେନ୍‌ଙ୍କ ହୃଦୟ ଦୟା ଓ କରୁଣାର ଏକ ଉତ୍ସଥିଲା। ଦୀନ ଦୁଃଖୀ ବା ରୋଗାକ୍ରାନ୍ତ ମାନବର ଆକୁଳତା ତାଙ୍କ ସମ୍ବେଦନଶୀଳ ପ୍ରାଣକୁ ଆନ୍ଦୋଳିତ କରିଥିଲା। ଅର୍ଥାଭାବ ଯୋଗୁଁ ତାଙ୍କର ବାଲ୍ୟଶିକ୍ଷା ଏକ ବାଳିକା ବିଦ୍ୟାଳୟରେ ହିଁ ଆରମ୍ଭ ହୋଇଥିଲା। ପାଠ ପଢ଼ିବା ପାଇଁ ସେ ପିଲାଦିନୁ ଖୁବ୍ ପରିଶ୍ରମ କରୁଥିଲେ। ନିଜେ ଶାରୀରିକ ପରିଶ୍ରମ କରି ଯାହା ରୋଜଗାର କରୁଥିଲେ ସେଥିରେ ତାଙ୍କରଶିକ୍ଷା ପାଇଁ ଆବଶ୍ୟକ ପୁସ୍ତକ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ଯୋଗାଡ଼ କରୁଥିଲେ।

ତାଙ୍କର ଏହି କଠିନ ପରିଶ୍ରମ ଫଳରେ ଦିନେ କୁଷ୍ଠାଶ୍ରମରେ ଜଣେ କର୍ମଚ୍ଚାରୀ ଭାବରେ ନିଯୁକ୍ତି ମିଳିଲା। ଏହି ନିଯୁକ୍ତି ପରେ ସେ ଭୀଷ୍ମଶପଥ କଲେ ଯେ କୁଷ୍ଠରୋଗୀ ମାନେ କିପରି ମାନବିକ ଅଧିକାର ପ୍ରାପ୍ତିରୁ ବଞ୍ଚିତ ନହେବେ ସେଥିପାଇଁ ସେ ତାଙ୍କର ଜୀବନ ଉତ୍ସର୍ଗ କରିବେ।

ହାନ୍‌ସେନ୍ ନିଯୁକ୍ତି ପାଇଥିବା ଲଂଗେଗାର୍ଡ଼ ହସ୍ପିଟାଲ୍‌ରେ ଡାନିଏଲ୍‌ସନ୍ ପ୍ରଧାନ ଚିକିତ୍ସକ ଭାବେ କାର୍ଯ୍ୟ କରୁଥାନ୍ତି। ତତ୍‌କାଳୀନ ଚିକିତ୍ସା ଜଗତରେ ଡାନିଏଲ୍ ସନ୍ କୁଷ୍ଠ ରୋଗ ବିଶେଷଜ୍ଞ ଭାବେ ସାରା ବିଶ୍ୱରେ ସମ୍ମାନିତ ହେଉଥିଲେ। ହାନ୍‌ସେନ୍ କିଛି ଦିନ ସେଠାରେ କାର୍ଯ୍ୟ କଲାପରେ ସେହି ମହାନ୍ ଚିକିତ୍ସକଙ୍କର ଏକମାତ୍ର କନ୍ୟାଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ ହେଲେ।

ଡାନିଏଲ୍ ସନ୍‌ଙ୍କ ମତାନୁଯାୟୀ କୁଷ୍ଠରୋଗ ଶରୀର ଦ୍ରବ ସମ୍ଭୂତ କିମ୍ବା ବଂଶାନୁଗତିକ। କିନ୍ତୁ ଏହା ସଂସର୍ଗିକ ଆଦୌ ନୁହେଁ। ହାନ୍‌ସେନ୍ ଏହି ରୋଗ ବିଷୟରେ ଭିନ୍ନ ଚିନ୍ତା କରୁଥିଲେ। ନିଜ ଶ୍ୱଶୁର ଏବଂ କୁଷ୍ଠରୋଗ ଚିକିତ୍ସାରେ ସୁପ୍ରତିଷ୍ଠିତ ବ୍ୟକ୍ତିଙ୍କ ସହ ଭିନ୍ନାଚରଣ କରିବା ପୂର୍ବରୁ ସେ ଯଥେଷ୍ଟ ସାବଧାନତା ଅବଲମ୍ବନ କରିଥିଲେ। ନରୱେର ବିଭିନ୍ନ ସଂପ୍ରଦାୟରେ ବୁଲି ବୁଲି ସେ ରୋଗର ଇତିହାସ, ବଂଶ ଇତିହାସ ସଂସର୍ଗିକ ପ୍ରଭାବ ଇତ୍ୟାଦି ପର୍ଯ୍ୟବେକ୍ଷଣ କଲେ। ବିଭିନ୍ନ କୁଷ୍ଠ-ଗ୍ରନ୍ଥିକାରୁ ତନ୍ତୁ ସବୁକୁ ପୁନଃ ପୁନଃ ପରୀକ୍ଷା କରିବା ଫଳରେ ଶେଷରେ ଏକ ଜୀବାଣୁର ସନ୍ଧାନ ପାଇଲେ।

ସେତେବେଳେ ନରୱେର କେତେକ ସମ୍ପ୍ରଦାୟରେ କୁଷ୍ଠରୋଗ ଖୁବ୍ ବ୍ୟାପକ ଅବସ୍ଥାରେ ଥିଲା। ପ୍ରତି ଏକ ହଜାର ଜନସଂଖ୍ୟାରେ ଏକାଧିକ ରୋଗୀ ଦେଖିବାକୁ ମିଳୁଥିଲେ। କିନ୍ତୁ ରୋଗୀ ମାନଙ୍କର ବଂଶ ମଧ୍ୟରେ ଅନ୍ୟ ପୁରୁଷକୁ ଏ ରୋଗ ଅଧିକାଂଶ ସମୟରେ ବ୍ୟାପୁନଥିବାରୁ ଏହା ବଂଶୋଦ୍ଭବ ରୋଗ ନୁହେଁ ବୋଲି ସେ ପ୍ରମାଣିତ କଲେ। ତା'ଛଡ଼ା ରୋଗୀର ଗ୍ରନ୍ଥିକାରୁ ତନ୍ତୁ ନେଇ ଅଣୁବୀକ୍ଷଣ ଯନ୍ତ୍ରରେ ସେ ଜୀବାଣୁ ଆବିଷ୍କାର କରିବା ଫଳରେ ଏହା ସାଂସର୍ଗିକ ହେବାର ସମ୍ଭାବନା ରହିଥିବାର ମଧ୍ୟ ପ୍ରମାଣିତ ହେଲା।

ତାଙ୍କର ଏହି ସବୁ ପରୀକ୍ଷା ପାଇଁ ପ୍ରାୟ ୭ ବର୍ଷ ସମୟ ଲାଗିଥିଲା । ୧୮୬୭ ମସିହାରେ ସେ ତାଙ୍କର ପରୀକ୍ଷାମାନ ଆରମ୍ଭ କରି ୧୮୭୪ ମସିହାରେ ତାଙ୍କର ତଥ୍ୟ ଗୁଡ଼ିକ ପ୍ରତିପାଦନ କଲେ । ୧୮୮୦ ମସିହାରେ କୁଷ୍ଠରୋଗ ଜୀବାଣୁର ନାମ କରଣ କରାଗଲା ।

ନିଜ ଆବିଷ୍କାର ତାଙ୍କୁ ନୂତନ ଉତ୍ସାହ ଓ ସ୍ଫୁର୍ତ୍ତି ଆଣିଦେଲା । ତା'ପରଠାରୁ କୁଷ୍ଠର ଜନପଦ ପ୍ରସାରକ ରୋଗ ତତ୍ତ୍ୱ, କାରଣ, ନିରାକରଣ, ପ୍ରତିଷେଧକ ବ୍ୟବସ୍ଥା ଓ ଆନୁଷ୍ଠାନିକ ତତ୍ତ୍ୱାବଧାନ ବ୍ୟବସ୍ଥାପାଇଁ ସେ ପ୍ରଗାଢ଼ ଚେଷ୍ଟା କରିଛନ୍ତି । ତାଙ୍କ ପ୍ରଚେଷ୍ଟା ଫଳରେ ଏହି ରୋଗ ପ୍ରତି ସମାଜରେ ଥିବା ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭାବେ ନହେଲେ ମଧ୍ୟ ଅନେକାଂଶରେ ପରିବର୍ତ୍ତିତ ହୋଇପାରିଥିଲା । ତେବେ ସେ କୁଷ୍ଠରୋଗ ନିରାକରଣ ପାଇଁ ଭିତ୍ତିପ୍ରସ୍ତର ସ୍ଥାପନ କରିଯାଇଥିଲେ । ତା'ଫଳରେ ବର୍ତ୍ତମାନ କିପରି ୨୦୦୦ ମସିହା ବେଳକୁ ପୃଥିବୀରୁ କୁଷ୍ଠରୋଗର ସମ୍ପୂର୍ଣ୍ଣ ଉନ୍ମୂଳନ ହୋଇପାରିବ ସେକଥା ଚିନ୍ତା କରାଯାଇପାରୁଛି ।

ହାନ୍‌ସେନ୍‌ଙ୍କ ସମୟରେ କୁଷ୍ଠରୋଗ ପାଇଁ ଚିକିତ୍ସା ବ୍ୟବସ୍ଥାରେ ବିଶେଷ ଉନ୍ନତି ହୋଇନଥିଲା । ଭାରତ ବର୍ଷରେ ପ୍ରଚଳିତ ଘ୍ରୁଲ୍‌ମୁଗୁରା ତେଲର ବ୍ୟବହାର ଓ ରୋଗୀକୁ ଅନ୍ୟଠାରୁ ବିଚ୍ଛିନ୍ନ କରି ରଖିବାହିଁ ପ୍ରାୟତଃ ସବୁଦେଶରେ ଅନୁସୃତ ହେଉଥିଲା । କିନ୍ତୁ ୧୯୪୩ ମସିହାରୁ ଡାପ୍‌ସୋନ୍ ନାମକ ଔଷଧର ପ୍ରବର୍ତ୍ତନ ଫଳରେ କୁଷ୍ଠରୋଗ ଚିକିତ୍ସାରେ ଏକ ବୈପ୍ଳବିକ ପରିବର୍ତ୍ତନ ଆସିଲା । ଅବଶ୍ୟ ବର୍ତ୍ତମାନ ଏହି ରୋଗର ଚିକିତ୍ସାରେ ଏକାଧିକ ଔଷଧର ପ୍ରଚଳନ କରାଯାଇଅଛି । ଏହାଦ୍ୱାରା ଖୁବ୍ ଶୀଘ୍ର ଏହି ରୋଗ ଆୟତ୍ତାଧୀନ ହୋଇପାରୁଅଛି । ମାତ୍ର ୬ମାସରୁ ବର୍ଷେ ଚିକିତ୍ସିତହେଲେ ରୋଗ ସମ୍ପୂର୍ଣ୍ଣ ରୂପେ ଆରୋଗ୍ୟ ହେଉଛି ।

୧୯୫୫ ମସିହାରୁ ଆମ ଦେଶରେ ଜାତୀୟ କୁଷ୍ଠନିୟନ୍ତ୍ରଣ ଯୋଜନା କାର୍ଯ୍ୟକାରୀ ହୋଇଆସୁଛି । ଏହା ମାଧ୍ୟମରେ ଏହି ଜାତୀୟ ସମସ୍ୟାର ଏକ ସନ୍ତୋଷ ଜନକ ସମାଧାନ ସମ୍ଭବ ହୋଇଛି ।

କୁଷ୍ଠରୋଗ ଏକ ଦୀର୍ଘକାଳୀନ, ଅଙ୍କରିକାର୍ବୁଦୀୟ ସାଂସର୍ଗିକ ରୋଗ। ଯେଉଁ ଶିଶୁମାନେ ଅନ୍ତତଃ ୫-୬ ବର୍ଷକାଳ ସଂକ୍ରାମକ ଅବସ୍ଥାରେ ଥିବା ରୋଗୀର ନିବିଡ଼ ସମ୍ପର୍କରେ ଆସିଥିବେ ସେମାନଙ୍କୁ ଏହି ରୋଗ ଆକ୍ରମଣ କରିବା ସମ୍ଭାବନା ଥାଏ। କିନ୍ତୁ ସୁଖର କଥା ଏହି ରୋଗରୁ ଆଧୁନିକ ଚିକିତ୍ସା ପ୍ରଣାଳୀଦ୍ୱାରା ଖୁବ୍ ସହଜରେ ଆରୋଗ୍ୟଲାଭ କରାଯାଇପାରେ। ରୋଗୀମାନଙ୍କ ମଧ୍ୟରୁ ମାତ୍ର ଏକ ପଞ୍ଚମାଂଶ ସଂକ୍ରାମକ ଅବସ୍ଥାରେ ଥାଆନ୍ତି। ସେମାନେ ଚିକିତ୍ସାଲାଭର ଦୁଇ ସପ୍ତାହରୁ ଚାରିସପ୍ତାହ ମଧ୍ୟରେ ଅଣସଂକ୍ରାମକ ବା ସାଧାରଣ ଅବସ୍ଥାକୁ ଆସିଯାଆନ୍ତି। ଏହା ବ୍ୟତୀତ ବର୍ତ୍ତମାନ ଆନୁଷ୍ଠାନିକ ଚିକିତ୍ସା ବ୍ୟବସ୍ଥା ଏତେ ସୁଲଭ୍ୟ ହୋଇଯାଇଛି ଯେ, ପ୍ରତି ଜନପଦରେ ଜଣେ ସ୍ୱାସ୍ଥ୍ୟ କର୍ମଚାରୀ ରୋଗୀ ଚିହ୍ନଟ କରନ୍ତି ଏବଂ ନିୟମିତ ଭାବେ ପ୍ରତିରୋଗୀକୁ ତାଙ୍କ ଗ୍ରାମ ନିକଟରେ ଯାଇ ମାଗଣାରେ ଆବଶ୍ୟକୀୟ ଔଷଧପତ୍ର ଦିଆଯାଇଥାଏ। ଏହି ସୁ-ବନ୍ଦୋବସ୍ତ ଫଳରେ ଧୀରେ ଧୀରେ କୁଷ୍ଠରୋଗୀଙ୍କ ସଂଖ୍ୟା ସମାଜରେ କମିବାରେ ଲାଗିଛି, ତେବେ ଗୋଟାଏ କଥା, ଏ ଦିଗରେ ମନେ ରଖିବାକୁ ହେବ ଯେ, କୁଷ୍ଠରୋଗର ପ୍ରାଥମିକ ଲକ୍ଷଣ କାହାରିଠାରେ ଦେଖାଦେଲେ ତାହାକୁ ଗୋପନ ନରଖି ବରଂ ଖୁବ୍ ଶୀଘ୍ର ତାହାର ଚିକିତ୍ସା ବ୍ୟବସ୍ଥା କରିବା ଏକାନ୍ତ ଆବଶ୍ୟକ। ତା ନହେଲେ ରୋଗୀ ନିଜର ପ୍ରଭୂତ କ୍ଷତି ସାଧନ କରିବା ସହିତ ଅନ୍ୟ ଲୋକକୁ ମଧ୍ୟ ରୋଗ ସଂକ୍ରମିତ ହେବାର ସମ୍ଭାବନା ଥାଏ। ଆଜିକାଲି ଏମ. ଡ଼ି. ଟି. ବା ବହୁ ଔଷଧ ଚିକିତ୍ସା ପ୍ରଣାଳୀ ଦ୍ୱାରା କୁଷ୍ଠରୋଗକୁ ଖୁବ୍ ସହଜରେ ନିୟନ୍ତ୍ରଣ କରାଯାଇପାରୁଛି।

ହାନ୍‌ସେନ୍‌ଙ୍କ ଜୀବନୀ ପାଠକଲେ ସେ ଜୀବନସାରା ଅଭାବ ଅନାଟନ ଭିତରେ ଥାଇ ମଧ୍ୟ କିପରି ଅନ୍ୟାୟ ଅବିଚାର ବିରୁଦ୍ଧରେ ସାହସର ସହିତ ଯୁଦ୍ଧ କରିଛନ୍ତି ଦେଖିବାକୁ ମିଳେ। ସେ ଯେତେବେଳେ କୁଷ୍ଠରୋଗ ବିଷୟରେ ତାଙ୍କର ତଥ୍ୟ ଉପସ୍ଥାପନ କରି ଏହା ଜୀବାଣୁ ଦ୍ୱାରା ବ୍ୟାପ୍ତ ଏକ ରୋଗ ବୋଲି ଜଣାଇଲେ, ଧର୍ମାନ୍ଧ ଜନ ସମାଜ ତାଙ୍କ ମତାମତକୁ ଗ୍ରହଣ ନକରି ତାଙ୍କୁ ଧର୍ମଦ୍ରୋହୀ ବୋଲି ଆଖ୍ୟା ଦେଲା। ତଥାପି ସେ ନିଜ କର୍ମପଥରେ ଅବିଚଳିତ ରହି ତାଙ୍କ ସଂଗ୍ରାମ ଅବ୍ୟାହତ ରଖିଥିଲେ। ସ୍ୱାମୀ-

ସ୍ତ୍ରୀଙ୍କ ମଧ୍ୟରୁ ଜଣକୁ ଏ ରୋଗ ହୋଇଥିଲେ ଏବଂ ରୋଗୀ ଚିକିତ୍ସାଧୀନ ଥିଲେ ଏହି ରୋଗ ଅନ୍ୟକୁ ହେବାର ସମ୍ଭାବନା ନାହିଁ। ତେଣୁ ସ୍ୱାମୀ ସ୍ତ୍ରୀଙ୍କୁ ବିଚ୍ଛେଦ କରାଇବାର କୌଣସି ଯୁକ୍ତିଯୁକ୍ତତା ନାହିଁ ବୋଲି ସେ ପ୍ରଥମେ ଦର୍ଶାଇଥିଲେ।

କୁଷ୍ଠରୋଗୀ ମାନଙ୍କ କଲ୍ୟାଣ ନିମନ୍ତେ ବିଶ୍ୱ-ସ୍ୱାସ୍ଥ୍ୟ-ସଂସ୍ଥା ତଥା ଅନ୍ୟାନ୍ୟ ଆନ୍ତଃରାଷ୍ଟ୍ରୀୟ ଅନେକ ଅନୁଷ୍ଠାନ ପ୍ରତ୍ୟେକ ଦେଶକୁ ସାହାଯ୍ୟ କରିବା ଫଳରେ ଏହି ରୋଗର ନିୟନ୍ତ୍ରଣରେ ଉଲ୍ଲେଖନୀୟ ଅଗ୍ରଗତି ହୋଇପାରିଛି। କିନ୍ତୁ ହାନ୍‌ସେନ୍‌ଙ୍କ ତ୍ୟାଗ, ସାଧନା, କର୍ତ୍ତବ୍ୟନିଷ୍ଠା, ରୋଗୀପ୍ରତି ସମ୍ବେଦନଶୀଳତା ହିଁ ଆଜି କୁଷ୍ଠରୋଗ ଚିକିତ୍ସା କ୍ଷେତ୍ରରେ ଏ ପ୍ରକାର ଉନ୍ନତି ସାଧନ କରିପାରିଛି ଏଥିରେ ସନ୍ଦେହ ନାହିଁ।

ଏହି ମହାମାନବ ନିଜ ସାଧନାମୟ ଜୀବନ ପରେ ୧୯୧୨ ମସିହାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ। ସ୍ୱର୍ଗରେ ଥାଇ ତାଙ୍କ ଅମର ଆତ୍ମା- ଯେପରି ମାନବ ସମାଜକୁ ଆହ୍ୱାନ କରୁଛି, କହୁଛି, "କୁଷ୍ଠରୋଗ ପୀଡ଼ିତ ବ୍ୟକ୍ତିକୁ ସମାଜିକ ନ୍ୟାୟରୁ ବଞ୍ଚିତ କରନାହିଁ। ସମାଜ ମଧ୍ୟରେ ତାକୁ ଉପଯୁକ୍ତ ଚିକିତ୍ସା ମିଳୁ। ସହଯୋଗ ମିଳୁ। ତେବେଯାଇ ୨୦୦୦ ମସିହା ସୁଦ୍ଧା କୁଷ୍ଠରୋଗ ପୃଥିବୀ ପୃଷ୍ଠରୁ ସଂପୂର୍ଣ୍ଣ ଦୂର ହୋଇପାରିବ।"





# ରର୍ବର୍ଟ କଚ୍ ଓ ଯକ୍ଷ୍ମା ରୋଗ

୧୮୪୩-୧୯୧୦ ମସିହା

ଯକ୍ଷ୍ମାରୋଗର ଇତିହାସ ଅତି ପୁରାତନ। ଖ୍ରୀଷ୍ଟପୂର୍ବ ୧୨୦୦ରୁ ୧୩୦୦ ମଧ୍ୟରେ ଭାରତବର୍ଷର ଶ୍ରେଷ୍ଠ ଦାର୍ଶନିକ ମନୁଙ୍କ ରଚିତ ମନୁ ସ୍ମୃତିରେ ଏହାର ବର୍ଣ୍ଣନା ରହିଛି। ଇଉରୋପୀୟ ଦେଶମାନଙ୍କରେ ମଧ୍ୟ ଅତି ପ୍ରାଚୀନ କାଳରୁ ଯକ୍ଷ୍ମା ରୋଗ ବିଷୟରେ

ଆଲୋଚନା ହୋଇଥିବାର ପ୍ରମାଣ ମିଳେ। ଆରିଷ୍ଟଟଲ ଓ ପରେ ଗ୍ୟାଲେନ ଉଭୟେ ମତ ପ୍ରକାଶ କରିଛନ୍ତି ଯେ, ଏହା ଏକ ସଂକ୍ରାମକ ରୋଗ। ଆଦିମ କାଳରୁ ଏହି ରୋଗ ମାନବ-ଜଗତର ମାରାତ୍ମକ ଶତ୍ରୁଭାବେ ପରିଚିତ।

ରୋଗ ଯିନା ପରିଚିତ ଥିଲା କିନ୍ତୁ ବିଂଶ ଶତାବ୍ଦୀ ପୂର୍ବରୁ ଏହାର ପ୍ରକୃତ କାରଣ ଏବଂ ନିରାକରଣ ସମ୍ବନ୍ଧରେ ମଣିଷର ବିଶେଷ କିଛି ଜ୍ଞାନ ନଥିଲା। ତେଣୁ ଏହା ଯୋଗୁଁ ପୃଥିବୀର ଅଧିକାଂଶ କ୍ଷେତ୍ରରେ ଅସଂଖ୍ୟ ଜୀବନହାନୀ ଘଟୁଥିଲା। ବର୍ତ୍ତମାନ ସୁଦ୍ଧା ଯକ୍ଷ୍ମାରୋଗର ପ୍ରକୋପ ପୃଥିବୀ-ପୃଷ୍ଠରେ ସମ୍ପୂର୍ଣ୍ଣରୂପେ ଲୋପ ପାଇପାରିନାହିଁ। ଉନ୍ନତ ଦେଶ ମାନଙ୍କରେ (ଯଥା ଆମେରିକା) ବିଂଶ ଶତାବ୍ଦୀ ପୂର୍ବରୁ ପ୍ରତି ୧ ଲକ୍ଷ ଲୋକରେ ୧୯୪ ଜଣ ଏହି ରୋଗରେ ପ୍ରାଣ ହରାଉଥିଲେ। କିନ୍ତୁ ବର୍ତ୍ତମାନ ସେହି ହାର ଯଥେଷ୍ଟ କମି ଯାଇଛି। ୧୯୭୭ ମସିହା ସୁଦ୍ଧା ଏହା ପ୍ରତି ଲକ୍ଷରେ ମାତ୍ର ୧.୨ ଅଛି। କିନ୍ତୁ ଅନୁନ୍ନତ ଓ ବିକାଶଶୀଳ ଦେଶ ମାନଙ୍କରେ ଲକ୍ଷ ପିଛା ୨୫୦ ରୁ ୫୦୦ ବ୍ୟକ୍ତି ଏହି ରୋଗରେ ଆକ୍ରାନ୍ତ ଏବଂ ସେମାନଙ୍କ ମୃତ୍ୟୁହାର ଏକ ଲକ୍ଷରେ ପ୍ରାୟ ୬୦ରୁ ୧୦୦ ପର୍ଯ୍ୟନ୍ତ। ସାରା ପୃଥିବୀକଥା ବିଗ୍ଭରକୁ ନେଲେ ଜଣାଯାଏ ଯେ ବର୍ତ୍ତମାନ ପ୍ରାୟ ୧୫ ରୁ ୨୦ ନିୟୁତ ଲୋକ ଏହି ରୋଗ ଦ୍ୱାରା ପୀଡ଼ିତ ତଥା ପ୍ରତ୍ୟେକ ବର୍ଷ ପ୍ରାୟ ୩.୫ ନିୟୁତ ଲୋକ ଏହି ରୋଗର ଶୀକାର ହେଉଛନ୍ତି। ତନ୍ମଧ୍ୟରୁ ପ୍ରାୟ ୨.୫ ନିୟୁତଲୋକ ପ୍ରତିବର୍ଷ ମୃତ୍ୟୁ ମୁଖରେ ପଡୁଛନ୍ତି।

ଏହି ସବୁ ତଥ୍ୟ ବିଗ୍ଭରକୁ ନେଲେ ଯକ୍ଷ୍ମାରୋଗ ମାନବ ସମାଜରେ କେତେ ବିରାଟ କ୍ଷତି ସାଧନ କରି ଆସୁଛି ତାହା ସହଜରେ ଅନୁମେୟ।

ଯେଉଁ ମହାନବ୍ୟକ୍ତିଙ୍କ ପ୍ରଚେଷ୍ଟା ଫଳରେ ଆଜି ପୃଥିବୀରେ ଏହି ରୋଗର ଉନ୍‌ମୂଳନ ନହେଲେବି ଯଥେଷ୍ଟ ପରିମାଣରେ ନିୟନ୍ତ୍ରଣ କରାଯାଇପାରିଛି ତାଙ୍କ ନାମ ହେଉଛି ରବର୍ଟ କଚ୍।

ଉନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ଆରମ୍ଭ - ଏହି ସମୟ ମଧ୍ୟରେ ବୋଧହୁଏ ଆଧୁନିକ ଚିକିତ୍ସାବିଜ୍ଞାନର ଅଧିକାଂଶ ମହତ୍ତ୍ୱପୂର୍ଣ୍ଣ ଉଦ୍ଭାବନ ଓ ଆବିଷ୍କାର ମାନ ସଙ୍ଘଠିତ ହୋଇଛି। ରବର୍ଟ କଚ୍ ମଧ୍ୟ ସେହି

ସମୟକାଳ ମଧ୍ୟରେ ଜନ୍ମ ଗ୍ରହଣ କରିଥିଲେ। ମାନବ କଲ୍ୟାଣ ପାଇଁ ହିଁ ତାଙ୍କ ଜନ୍ମ ଯେପରି ଅଭିପ୍ରେତ ଥିଲା।

୧୮୪୩ ମସିହାରେ କେନ୍ଦ୍ର ଜର୍ମାନୀର ହାର୍ଯ ପର୍ବତମାଳାର ପାଦଦେଶରେ ଥିବା କ୍ଲାଷ୍ଟାଲ୍ ଠାରେ ସେ ଜନ୍ମଗ୍ରହଣ କରିଥିଲେ। ଏକ ନିପଟ ମଫସଲ ପରିବେଶ ଏବଂ ତା' ସାଙ୍ଗକୁ ବହୁକୁଟୁମ୍ବୀ ପରିବାର ଭିତରେ ତାଙ୍କର ବାଲ୍ୟଜୀବନ କଟିଛି। ସମୁଦାୟ ୧୩ଟି ସନ୍ତାନ ଜନ୍ମଦେଇ ତାଙ୍କ ବାପା, ମା ପ୍ରାୟତଃ ଏକ ନିଃସ୍ୱ ଜୀବନ ଯାପନ କରୁଥାଆନ୍ତି। ପିଲା ମାନଙ୍କୁ ଦିନକୁ ଓଳିଏ ଖାଇବାକୁ ମିଳେ। ତା'ପୁଣି ମୋଟା ରୁଟି ସାଙ୍ଗକୁ ଟିକିଏ ପାଣିଦହି ଓ କିଛି ଭଜା। ରବିବାର ହେଲେ ଖଣ୍ଡେ ପରଟା ଭାଗରେ ପଡ଼େ। ସପ୍ତାହକୁ କେବଳ ଦୁଇଦିନ ମାଂସ ଖଣ୍ଡିଏ ଲେଖାଏଁ ଛୁଆ ମାନଙ୍କୁ ମିଳିଥାଏ।

ଏହି ପ୍ରକାର ପରିବେଶରେ ବଢ଼ିଥିଲେ ହେଁ କଚ୍‌ଙ୍କର ବିଚକ୍ଷଣତା ଓ କର୍ମପଟୁତାହିଁ ତାଙ୍କୁ ଧୀରେ ଧୀରେ ଉନ୍ନତି ପଥରେ ଆଗେଇ ନେଲା। ତାଙ୍କୁ ଯେତେବେଳେ ୧୪ ବର୍ଷ ବୟସ ସେ ତାଙ୍କ ଘର ନିକଟରେ ଥିବା ଗଟିନ୍‌ଜେନ୍ ବିଶ୍ୱବିଦ୍ୟାଳୟରେ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରିବାକୁ ଗଲେ। ମାତ୍ର ୧୯ ବର୍ଷ ବୟସରେ ସେ ଡିଗ୍ରୀ ହାସଲ କରି ହାମ୍‌ବର୍ଗ ହସ୍ପିଟାଲରେ ହାଉସମ୍ୟାନ କାମ ଶେଷକଲେ। ତା'ପରେ ପରିବାରର ଆର୍ଥିକ ଦୁରାବସ୍ଥା ଯୋଗୁଁ ଖୁବ୍ ଶୀଘ୍ର ନିଜର ଚିକିତ୍ସା ବ୍ୟବସାୟ ଆରମ୍ଭ କରିଦେଲେ। ପ୍ରଥମ କେତେବର୍ଷ ଅର୍ଥନୈତିକ ଦୃଷ୍ଟିକୋଣରୁ ତାଙ୍କୁ ଆଶାନୁରୂପ ସଫଳତା ମିଳିପାରିଲାନାହିଁ। ସେତିକିବେଳେ ଫ୍ରାନ୍‌ସ ଓ ପ୍ରୁସିଆ ମଧ୍ୟରେ ଯୁଦ୍ଧ ହେଲା। ସେଥିରେ ସେ ସର୍ଜନ ହିସାବରେ ଯୋଗଦେଲେ। ଯୁଦ୍ଧପରେ ତାଙ୍କ ହାତରେ କିଛି ଅର୍ଥ ଥିଲା। ତାହାକୁ ପାଥେୟ କରି ସେ ପୂର୍ବ ଜର୍ମାନୀରେ ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ। ସେହି ସମୟ ମଧ୍ୟରେ ଯକ୍ଷ୍ମା ରୋଗ ଜନିତ ମାନବ ସମାଜର ଯେଉଁ ପ୍ରଭୂତ କ୍ଷତି ସାଧିତ ହେଉଥିଲା ତାହା କଚ୍‌ଙ୍କ ପ୍ରାଣରେ ଗଭୀର ରେଖାପାତ କଲା। ତେଣୁ ସେ ପୋଜେନ୍ ସହର ଉପକଣ୍ଠରେ ଥିବା ୱାଲ୍‌ଷ୍ଟିନ୍ ନିକଟରେ ଏକ ଛୋଟ ବିଜ୍ଞାନାଗାର ନିର୍ମାଣ

କରି ସେଠାରେ ସାମୟିକ ଭାବେ ଗବେଷଣା କଲେ । କିନ୍ତୁ ପରେ ପରେ ସେ ଗବେଷଣା ପ୍ରତି ଏତେ ଆକୃଷ୍ଟ ହୋଇ ପଡ଼ିଲେ ଯେ, ନିଜର ଚିକିତ୍ସା ବ୍ୟବସାୟକୁ ଭୁଲି ସେ ଦିନରାତି ସେହି ଗବେଷଣାଗାରରେ ହିଁ ବ୍ୟସ୍ତ ରହିଲେ ।

ଛୋଟ ମାଟିଘରଟିଏ, ତା'ଭିତରେ ଗୋଟିଏ ସରଳ ଓ ପୁରାତନ ଅଣୁବୀକ୍ଷଣ ଯନ୍ତ୍ର, ହାତ ତିଆରି ଗୋଟିଏ ମାଇକ୍ରୋଟୋମ୍ ଓ (ଇନ୍‌କ୍ୟୁବେଟର) ଉଷ୍ମକ । ଏହା ବ୍ୟତୀତ ଅନ୍ୟ କିଛି ରାସାୟନିକ ପଦାର୍ଥ ଯନ୍ତ୍ରପାତି ଓ ସାଜ ସରଞ୍ଜାମ ଖୁବ୍ ସଂକ୍ଷିପ୍ତ । ତା ସାଙ୍ଗକୁ ଅର୍ଥାଭାବ । ତଥାପି ସେହି ପରିବେଶହିଁ ତାଙ୍କୁ ତୃପ୍ତି ଦେଲା । ପ୍ରଥମେ ସେ କିଛି ସାମୁଦ୍ରିକ ଗୁଳ୍ମ ବିଷୟରେ ଅଧ୍ୟୟନ କଲେ । ତା' ପରେ ଆରମ୍ଭ ହେଲା ରୋଗ ଜୀବାଣୁ ଉପରେ ଗବେଷଣା ।

ସେତେବେଳେ ରୋଗ ଜୀବାଣୁ ହିଁ ରୋଗର କାରଣ ବୋଲି ବୈଜ୍ଞାନିକ ମାନେ ମଧ୍ୟ ଚିନ୍ତା କରୁନଥିଲେ । ମଣିଷ ଦେହରେ ଥିବା ଜୀବାଣୁ କେବଳ ଏକ ପରାଙ୍ଗପୁଷ୍ଟ ଜୀବ ବୋଲି ସେମାନଙ୍କର ଧାରଣା ଥିଲା । କିନ୍ତୁ ପ୍ରାୟ ୧୦ ବର୍ଷର ଗଭୀର ସାଧନା ପରେ ଆନ୍ଥ୍ରାକ୍ସରୋଗର ଜୀବାଣୁର ଆବିଷ୍କାର କରି ରବର୍ଟ କଚ୍ ପ୍ରତିପାଦିତ କଲେ ଯେ, ଇଉରୋପରେ ପ୍ରତିବର୍ଷ ଲକ୍ଷ ଲକ୍ଷ ଗାଈ ଓ ମେଣ୍ଢା ଆଦି ଗୃହପାଳିତ ପଶୁ ମାନଙ୍କର ମୃତ୍ୟୁର କାରଣ ସେହି ଆନ୍ଥ୍ରାକ୍ସ ଜୀବାଣୁ । ସେ ତାଙ୍କର ଏହି ମତ ୧୮୯୬ ମସିହାରେ ପ୍ରକାଶ କଲେ । ଲୁଇ ପାଷ୍ଟରଙ୍କ ପ୍ରାଥମିକ ତତ୍ତ୍ୱ ଗୁଡ଼ିକ ଉପରେ ଏହା ଆଧାରିତ ହୋଇଥିଲେ ହେଁ କଚ୍‌ଙ୍କ ବିବରଣୀରେ ଅନ୍ୟ କେତେକ ମୌଳିକତା ମଧ୍ୟ ରହିଥିଲା ।

୧୮୮୦ ମସିହାରେ ବର୍ଲିନ୍‌ସ୍ଥିତ ଇମ୍ପେରିଆଲ୍ ହେଲଥ୍ ଅଫିସରୁ କଚ୍‌ଙ୍କୁ ନିମନ୍ତ୍ରଣ ଆସିଲା । ସେଠାରେ ଜୀବାଣୁତତ୍ତ୍ୱ ସମ୍ବନ୍ଧୀୟ ଗବେଷଣା କରିବାପାଇଁ ତାଙ୍କୁ ପୂର୍ଣ୍ଣ ସାହାଯ୍ୟ ଓ ସ୍ୱାଧୀନତା ମିଳିଲା । ଫଳରେ ଦିନକୁ ଦିନ ତାଙ୍କ ଗବେଷଣାରେ କ୍ରମୋନ୍ନତି ଦେଖାଦେଲା । ୧୮୮୩ ମସିହାରେ ହଇଜା ରୋଗର ଜୀବାଣୁ ଆବିଷ୍କାର କରି ଏସିଆ ମହାଦେଶରେ ପ୍ରତିବର୍ଷ

ନିଯୁତ ସଂଖ୍ୟାରେ ପ୍ରାଣ ହରାଉଥିବା ବ୍ୟକ୍ତି ମାନଙ୍କର ମୃତ୍ୟୁର କାରଣ ସେ ନିରୂପଣ କରିପାରିଲେ।

ତା'ପରେ ୧୮୮୨ ମସିହା ମାର୍ଚ୍ଚ ମାସ ୨୪ ତାରିଖ ଦିନ ସେ ଯେଉଁ ଜୀବାଣୁ ସମ୍ପର୍କରେ ବର୍ଲିନସ୍ଥ ଫିଜିଓଲଜିକାଲ୍ ସୋସାଇଟି ସମ୍ମୁଖରେ ଆଲୋକ ପ୍ରଦାନ କଲେ, ତାହା ରବର୍ଟକଚ୍‌ଙ୍କୁ ଚିରଦିନ ପାଇଁ ଚିକିତ୍ସା ବିଜ୍ଞାନ ଜଗତରେ ଅମର କରାଇଦେଲା। ସେ ଜୀବାଣୁଟି ହେଲା ମାଇକୋବାକ୍‌ଟେରିଅମ୍ ଟ୍ୟୁବର୍‌କୁଲୋସିସ୍। ଏହି ଜୀବାଣୁ ଯୋଗୁଁ ଯକ୍ଷ୍ମାରୋଗ ବ୍ୟାପି ଥାଏ।

ଜୀବାଣୁର ଆବିଷ୍କାର ପରେ ପରେ କିପରି ଏହି ରୋଗର ପ୍ରଳୟଙ୍କରୀ ପ୍ରଭାବରୁ ମାନବ ସମାଜ ମୁକ୍ତ ହୋଇପାରିବ ସେଥିପାଇଁ ବିଭିନ୍ନ ପରୀକ୍ଷା ଚଳାଇବାରେ ଲାଗିଲେ। ରୋଗ ଅନାକ୍ରମ୍ୟଣ ବା ମାନବ ଦେହରେ ରୋଗପ୍ରତିରୋଧ ଶକ୍ତି, ଟ୍ୟୁବର୍‌କୁଲିନ୍ ନାମକ ଆଣ୍ଟିଜେନ୍‌ର ଆବିଷ୍କାର, କଚ୍ ଫେନୋମେନନ ଇତ୍ୟାଦିର ସେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରିବାକୁ ଲାଗିଲେ। ଅବଶ୍ୟ ଆଜିକାଲି ଯକ୍ଷ୍ମା ରୋଗର ନିରୂପଣ ପାଇଁ ଯେଉଁ ଟ୍ୟୁବରକୁଲିନ୍ ପରୀକ୍ଷା କରାଯାଉଛି ତାହାର ଉଦ୍ଭାବନ ଭନ୍ ପିରକେଟ୍‌ଙ୍କ ଦ୍ୱାରା ୧୯୦୭ ମସିହାରେ ହୋଇଥିଲା ବୋଲି କେହି କେହି ମତ ଦିଅନ୍ତି। କିନ୍ତୁ ଏ ବାବଦୀୟ ପ୍ରାରମ୍ଭିକ ସମସ୍ତ ସୂଚନା କଚ୍‌ଙ୍କଠାରୁ ହିଁ ମିଳିଥିଲା।

୧୮୯୦ ମସିହାରେ ବର୍ଲିନଠାରେ ଅନୁଷ୍ଠିତ ଦଶମ ଆନ୍ତଃରାଷ୍ଟ୍ରୀୟ ଭେଷଜ ବିଜ୍ଞାନ କଂଗ୍ରେସ୍‌ରେ ରବର୍ଟ କଚ୍ ଘୋଷଣା କଲେ ଯେ, ଯକ୍ଷ୍ମାରୋଗର ଆରୋଗ୍ୟ ପାଇଁ ଏକ ଉପାଦାନ ଉଦ୍ଭାବନ କରିଛନ୍ତି। କିନ୍ତୁ ସେଠାରେ ଔଷଧ ବିଷୟରେ ଅଧିକ କିଛି ପ୍ରକାଶ କଲେନାହିଁ। ୧୮୯୧ ମସିହାରେ ସେ ଟ୍ୟୁବର୍‌କୁଲିନ୍‌ର ନାମ ଉଚ୍ଚାରଣ କଲେ। ଏହା ଯକ୍ଷ୍ମା ଜୀବାଣୁ ସମ୍ଭୂତ ଏକ ପ୍ରୋଟିନ୍। କିନ୍ତୁ ଦୁଃଖର ବିଷୟ ଯେ, ତାଙ୍କର ଏହି ପରୀକ୍ଷା ତାଙ୍କ ଜୀବନର ଏକ ବିରାଟ ଅସଫଳତା ରୂପେ ପରିଗଣିତ ହେଲା। ଟ୍ୟୁବର୍‌କୁଲିନ୍ ଯକ୍ଷ୍ମାରୋଗର ଆରୋଗ୍ୟ କରିପାରିଲା ନାହିଁ ସତ କିନ୍ତୁ ପରେ

ଏହା ଯକ୍ଷ୍ମା ରୋଗ ନିରୂପଣ କରିବାପାଇଁ ଏକ ଉତ୍କୃଷ୍ଟ ପନ୍ଥାରୂପେ ବିବେଚିତ ହେଲା ।

୧୮୮୫ ମସିହାରେ ଲିପ୍‌ଜିଗ୍ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦପାଇଁ ମିଳିଥିବା ନିମନ୍ତ୍ରଣକୁ ସେ ଅଗ୍ରାହ୍ୟ କରି ବର୍ଲିନ୍ ବିଶ୍ୱବିଦ୍ୟାଳୟରେ ଗଢ଼ିଉଠିଥିବା ହାଇଜିନିକ୍ ଇନ୍‌ଷ୍ଟିଚ୍ୟୁଟ୍ ବିଭାଗୀୟ ମୁଖ୍ୟ ରୂପେ ପଦଭାର ସମ୍ଭାଳିଲେ । ସେହି ଅନୁଷ୍ଠାନରେ ସେ ମୁଖ୍ୟଭାବେ କାର୍ଯ୍ୟ ସମ୍ପାଦନ କଲାବେଳେ ତାଙ୍କ ଅଧୀନରେ ଅନେକ ବିଶ୍ୱବିଖ୍ୟାତ ବୈଜ୍ଞାନିକ କାର୍ଯ୍ୟ କରିଛନ୍ତି । ଏହି ସମୟ ମଧ୍ୟରେ ସେ ପ୍ରଥମେ ଜର୍ନାଲ୍ ଅଫ୍ ହାଇଜିନ୍‌ର ପ୍ରତିଷ୍ଠାତା ସମ୍ପାଦକ ଥିଲେ । ପରେ ପରେ ସେ ବର୍ଲିନର ସଂକ୍ରାମକ ରୋଗ ଅନୁଷ୍ଠାନର ମୁଖ୍ୟଭାର ସମ୍ଭାଳିଲେ । ତାଙ୍କ ମୃତ୍ୟୁପରେ ଏହି ଅନୁଷ୍ଠାନ ତାଙ୍କ ନାମାନୁସାରେ ଅଭିହିତ ହୋଇଅଛି ।

ବିଜ୍ଞାନ ପାଇଁ ନିଜର ଜୀବନକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିଥିଲେହେଁ ବିଜ୍ଞାନ ପଣ୍ଡିତମାନେ ତାଙ୍କୁ ଉଚିତ ସମ୍ମାନ ଦେଖାଇବାରେ କୁଣ୍ଠାବୋଧ କରୁଥିଲେ । ତାଙ୍କ ଜୀବନର ଶେଷ ପନ୍ଦର ବର୍ଷ ସେ କେବଳ ସଂକ୍ରାମକ ବ୍ୟାଧି ସମ୍ପର୍କୀୟ ଗବେଷଣାରେ ମନୋନିବେଶ କରିଥିଲେ । ବିଭିନ୍ନ ଦେଶରେ ତାଙ୍କର ସାରଗର୍ଭକ ସନ୍ଦର୍ଭମାନ ପାଠ କରି ସେ ସର୍ବଜନାଦୃତ ହେଲେ । ବିଭିନ୍ନ ଦେଶ ବୁଲି ସେଠାରେ ହେଉଥିବା ସଂକ୍ରାମକ ରୋଗଗୁଡ଼ିକର ଗଭୀର ଅନୁଧ୍ୟାନ କରି ତାହାର ନିରାକରଣର ଉପାୟମାନ ସେ ମାନବ ସମାଜକୁ ଦେଇଥିଲେ । ଭାରତରେ ହେଉଥିବା ପ୍ଲେଗ୍, ଦକ୍ଷିଣ ଆଫ୍ରିକାରେ ହେଉଥିବା ଗୋଜାତୀୟ-ପ୍ଲେଗ୍, ପଶ୍ଚିମ ଆଫ୍ରିକାର ସି. ସି. ରୋଗ, ଇଷ୍ଟ-ଇଣ୍ଡିଜ୍‌ରେ ହେଉଥିବା ମ୍ୟାଲେରିଆ ଇତ୍ୟାଦି ମହାମାରୀର ସମାଧାନ ସୂତ୍ର ଖୋଜିବା ପାଇଁ ସେ ତାଙ୍କର ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଆପ୍ରାଣ ଉଦ୍ୟମ କରିଛନ୍ତି ।

ଶେଷରେ ୧୯୦୫ ମସିହାରେ ତାଙ୍କ ଆଦର୍ଶମୟ ଉତ୍ସର୍ଗୀକୃତ ଜୀବନ ତଥା ଜନକଲ୍ୟାଣ ଧର୍ମୀ ଉଦ୍ଭାବନ ପାଇଁ ତାଙ୍କୁ ନୋବେଲ୍ ପୁରସ୍କାର ପ୍ରଦାନ କରାଗଲା । ତା'ର ମାତ୍ର ୩ ବର୍ଷପରେ ନିୟର୍କର ଏକାଡ଼େମୀ ଅଫ

ମେଡ଼ିସିନ୍ ତାଙ୍କୁ ସମ୍ମାନିତ ଆଜୀବନ ସଭ୍ୟ ଭାବେ ଗ୍ରହଣ କଲେ। ଏହା ସହିତ ତାଙ୍କଦ୍ୱାରା ପ୍ରତିଷ୍ଠିତ କଚ୍ ଅନୁଷ୍ଠାନ ପାଇଁ ସାରା ବିଶ୍ୱରୁ ଅର୍ଥର ସୁଅ ଛୁଟିଲା।

ଯକ୍ଷ୍ମାରୋଗ ନିରାକରଣ ପାଇଁ ଏକ ଔଷଧର ଉଦ୍ଭାବନ କରିବା ରବର୍ଟ କଚ୍‌ଙ୍କର ଶେଷ ଇଚ୍ଛାଥିଲା। ତାଙ୍କ ଅକ୍ଳାନ୍ତ ପରିଶ୍ରମ ଓ ସହନଶୀଳତା ଏ ଦିଗରେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲା। କିନ୍ତୁ ଧର୍ମପଦ କୋଣାର୍କର ଦଧିନଉତି ସ୍ଥାପନ କଲାଭଳି, ଡା : ୱାଲ୍‌ସ୍‌ମ୍ୟାନ୍ ୧୯୪୨ ମସିହାରେ ଷ୍ଟ୍ରେପ୍ଟୋମାଇସୀନ୍ ନାମକ ଔଷଧ ଉଦ୍ଭାବନକରି କଚ୍‌ଙ୍କ ଇଚ୍ଛା ପୂରଣ କରିଥିଲେ। ଏହାଦ୍ୱାରା ଯକ୍ଷ୍ମାରୋଗ ଜୀବାଣୁଙ୍କୁ ନାଶ କରାଯାଇପାରିଲା।

ପରବର୍ତ୍ତୀକାଳରେ ୧୯୫୧ ମସିହା ପରଠାରୁ ବିଶ୍ୱ ସ୍ୱାସ୍ଥ୍ୟ ସଂଘ (ଡବ୍ଲ୍ୟୁ. ଏଚ୍. ଓ.) ଏବଂ ୟୁନିସେଫ୍ ସହାୟତାରେ ବିଭିନ୍ନ ଦେଶରେ ଯକ୍ଷ୍ମାରୋଗ ନିରାକରଣ ଯୋଜନା ମାଧ୍ୟମରେ ବି. ସି. ଜି. ଟୀକା ଆଦି ପ୍ରଦାନ କରାଯାଉଛି। ଔଷଧ ମାଗଣାରେ ଦିଆଯାଉଛି। ଆମଦେଶରେ ଏହି ଯୋଜନା ୧୯୫୫ ରୁ ୧୯୫୮ ମଧ୍ୟରେ ଆରମ୍ଭ କରାଯାଇଛି। ଇତି ମଧ୍ୟରେ ଯକ୍ଷ୍ମାରୋଗର ରୋଗ ନିର୍ଣ୍ଣୟ ପ୍ରଣାଳୀ ଚିକିତ୍ସା ବିଧାନ ତଥା ପ୍ରତିଷେଧକ ବ୍ୟବସ୍ଥାରେ ପ୍ରଭୂତ ବିକାଶ ସାଧନ ହୋଇଛି। କିନ୍ତୁ ଏହି ରୋଗ ବିଷୟରେ କଚ୍‌ଙ୍କର ଅବଦାନ ଏତେ ବ୍ୟାପ୍ତ ଯେ, ଯେତେଯାହାହେଲେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ଛାପ ଦେଖିବାକୁ ମିଳୁଛି।

ମାଟିର ଦେହଧରି କଚ୍ ଆସିଥିଲେ ସଂସାରକୁ। ଶରୀରର ବିନାଶ ଅବଶ୍ୟମ୍ଭାବୀ। ଜୀବନ ସାରା ମାନବ ଜଗତର ଭୟାବହ ଶତ୍ରୁ ମାନଙ୍କ ସହିତ ଲଢ଼ି ୧୯୧୦ ମସିହାରେ ବର୍ଲିନ୍ ସହରରେ ତାଙ୍କ ମରଦେହ ଛାଡ଼ି ସେ ଚାଲିଗଲେ ଅମରପୁରୀକୁ।





ଉଇଲ୍‌ହେମ୍ କୋନାର୍ଡ଼
ରଞ୍ଜନ ଓ ରଞ୍ଜନ ରଶ୍ମି

୧୮୪୫-୧୯୨୩ ମସିହା

'ଏକ୍ସରେ' ବା ରଞ୍ଜନ ରଶ୍ମିର ନାମ କିଏ ବା ନଜାଣେ ? ଏହା ଏକ ପ୍ରକାର ଆଲୋକ। ତରଙ୍ଗ ଦୈର୍ଘ୍ୟ ଅତି କମ୍ ହୋଇଥିବାରୁ ଏହା ଦେଖାଯାଏ ନାହିଁ। ଏହି ଆଲୋକରେ ଭେଦନଶକ୍ତି ଅନେକ ଅଧିକ। ମଣିଷର ଚମଡ଼ା ଓ ମାଂସ, ତଥା

ଅନ୍ୟାନ୍ୟ ଅନେକ ଜୈବିକ ପଦାର୍ଥଦେଇ ଏହା ନିର୍ବିଘ୍ନରେ ଗତି କରିପାରେ । ତେଣୁ ଚିକିତ୍ସା ବିଜ୍ଞାନରେ ରୋଗ ନିର୍ଣ୍ଣୟ ପାଇଁ ଏହାର ଆବଶ୍ୟକତା ଅପରିହାର୍ଯ୍ୟ । ଆଧୁନିକ ବିଜ୍ଞାନ ଏହାକୁ ଅନ୍ୟାନ୍ୟ ଅନେକ କ୍ଷେତ୍ରରେ ବ୍ୟବହାର କରିବା ଫଳରେ ଏକ୍ସରେ ଅତି ଲୋକପ୍ରିୟ ହୋଇପାରିଛି ।

ମଣିଷ ଶରୀରରେ ହାଡ଼ ଭାଙ୍ଗିଯାଇଥିଲେ କିମ୍ବା ହାଡ଼ରେ ଅନ୍ୟ କୌଣସି ରୋଗ ହୋଇଥିଲେ . ଏକ୍ସରେ ଦ୍ୱାରା ତାହା ଜଣାପଡ଼ିଯାଏ । ପିତ୍ତକୋଷ, ବୃକକ୍ କିମ୍ବା ମୁତ୍ରାଶୟରେ ଅଶ୍ମରୀ ହେଲେ କିମ୍ବା ପାକସ୍ଥଳୀ ବା ବୃହଦାନ୍ତ୍ର ବା କ୍ଷୁଦ୍ରାନ୍ତ୍ରରେ ଘା' ହେଲେ କିମ୍ବା କୌଣସି ବର୍ଦ୍ଧନ ହେଲେ ରୋଗ ନିର୍ଦ୍ଧାରଣ ପାଇଁ ଏହା ଆବଶ୍ୟକ ହୁଏ । ଫୁସ୍‌ଫୁସ୍ ତଥା ମସ୍ତିଷ୍କରେ ମଧ୍ୟ ଅନେକ ରୋଗ ନିର୍ଣ୍ଣୟ ପାଇଁ ଏହାର ବ୍ୟବହାର କରାଯାଇଥାଏ । ଆଜିକାଲି ଶରୀରର ଯେ କୌଣସି ଅଂଶରେ କେତେକ ରୋଗର ଲକ୍ଷଣ କ୍ୟାଟସ୍କାନ୍ ଦ୍ୱାରା ଜାଣିହେଉଛି । ସେଥିପାଇଁ ମଧ୍ୟ ଏହି ରଶ୍ମିର ଅବଶ୍ୟକତା ପଡୁଛି । ଏହା ବ୍ୟତୀତ କ୍ୟାନ୍‌ସର ପରି ମାରାତ୍ମକ ରୋଗର ଚିକିତ୍ସାରେ ମଧ୍ୟ ଏହା ବ୍ୟବହୃତ ହୁଏ ।

ବଡ଼ ବଡ଼ ଅଟ୍ଟାଳିକା ବା ପୋଲ ଇତ୍ୟାଦି ନିର୍ମାଣ ବେଳେ ଯେଉଁ ଲୁହା ଛଡ଼ ଇତ୍ୟାଦି ବ୍ୟବହୃତ ହୁଏ ସେଥିରେ ପବନ ଫୋଟକା ରହିଯାଉଛି କି ନାହିଁ ଜାଣିବା ପାଇଁ ରଞ୍ଜନ ରଶ୍ମି ବ୍ୟବହାର କରାଯାଏ । କୌଣସି ସ୍ଥାନରେ ସୁନା ରୂପା ଆଦି ଦାମୀ ଧାତୁ ପଦାର୍ଥ କିମ୍ବା ମୂଲ୍ୟବାନ ରତ୍ନ ଆଦି ଲୁଚି ରହିଥିଲେ ତାହା ଏହି ଆଲୋକ ସାହାଯ୍ୟରେ ଅନୁସନ୍ଧାନ କରାଯାଇପାରୁଛି । ବିଭିନ୍ନ ସ୍ଫଟିକକୁ ଏହା ଚିହ୍ନଟ କରିପାରେ । ତେଣୁ ପ୍ରାକୃତିକ ହୀରା ଓ କୃତ୍ରିମ ହୀରା କୁ ଚିହ୍ନିବା ପାଇଁ ମଧ୍ୟ ଏହା ବ୍ୟବହୃତ ହୋଇଥାଏ । ଆଧୁନିକ ଯୁଗରେ ଏହାର ବ୍ୟବହାର ମୋଟା ମୋଟି ଅସୀମ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହି ଆଲୋକର ଉଦ୍‌ଭାବକଙ୍କ ନାମ ଉଇଲିୟମ୍ କୋନାର୍ଡ ରନ୍‌ଜନ୍ । ଜର୍ମାନୀର ଲିଜେପ୍ ଗ୍ରାମରେ ୧୮୪୫ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ଏକ କୃଷକ ପରିବାରରେ ତାଙ୍କର ଜନ୍ମ । ତାଙ୍କ ବାପା ଜର୍ମାନ୍

କିନ୍ତୁ ମା' ଥିଲେ ହଲାଣ୍ଡର ଅଧିବାସୀ। ତେଣୁ ରନ୍‌ଜନ୍‌ଙ୍କର ବାଲ୍ୟ ଶିକ୍ଷା ହଲାଣ୍ଡରେ ଶେଷ ହେବା ପରେ ତାଙ୍କୁ ସୁଇଜରଲାଣ୍ଡ ପଠାଗଲା। ସେଠାରେ ଜୁରିକ୍ ବିଶ୍ୱବିଦ୍ୟାଳୟରୁ ଏମ୍.ଏସ.ସି. ପାଶ୍ କରିବା ପରେ ୧୮୬୯ ମସିହାରେ ସେହି ଅନୁଷ୍ଠାନରୁ ପି.ଏଚ୍.ଡ଼ି. ଉପାଧିପ୍ରାପ୍ତ ହେଲେ। ପ୍ରଥମରୁ ସେ ଜଣେ ମେଧାବୀ ଛାତ୍ର ଥିଲେ। ପଢ଼ିବା ଓ ପଢ଼ାଇବାରେ ତାଙ୍କର ରୁଚି ଥିଲା। ତେଣୁ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସେ ଅଧ୍ୟାପକ ଭାବେ କାର୍ଯ୍ୟ କରିବା ପରେ ଶେଷରେ ଉଇଜ୍‌ବର୍ଗ ବିଶ୍ୱବିଦ୍ୟାଳୟ ତାଙ୍କୁ ପଦାର୍ଥ ବିଜ୍ଞାନର ବିଭାଗୀୟ ମୁଖ୍ୟ ଭାବେ ଗ୍ରହଣ କଲେ। ସେହି ସ୍ଥାନରେ ହିଁ ରନ୍‌ଜନ୍ ତାଙ୍କର ବିଶ୍ୱପ୍ରସିଦ୍ଧ ଉଦ୍‌ଭାବନ କରିବାକୁ ସକ୍ଷମ ହୋଇଥିଲେ।

ପ୍ରତିଦିନ ନିଜର କାର୍ଯ୍ୟ ଶେଷ ହେଲାପରେ ରନ୍‌ଜନ୍ ଗବେଷଣାଗାରରେ ହିଁ ତାଙ୍କର ବାକି ସମୟ କାଟି ଥାଆନ୍ତି। ଦୁଆର ବନ୍ଦ କରି ଅନ୍ଧାର ଘରେ ସେ ଓ ତାଙ୍କର ଦୁଇ ଜଣ ସହକାରୀ କିଛିନା କିଛି ପରୀକ୍ଷାରେ ସର୍ବଦା ବ୍ୟସ୍ତ ଥାଆନ୍ତି। ଦିନେ ପ୍ରଫେସର ରନ୍‌ଜନ୍ ତାଙ୍କ ଗବେଷଣାଗାରରେ ବିଦ୍ୟୁତ୍ ଶକ୍ତି ଉପରେ କିଛି ପରୀକ୍ଷା କରୁଥାଆନ୍ତି। ଏକ ଆଶିଂକଭାବେ ଶୂନ୍ୟ କାଚନଳୀ (କାଥୋଡ୍-ରେ' ଟ୍ୟୁବ୍) ଭିତରେ ବିଭିନ୍ନ ବାଷ୍ପ ମାଧ୍ୟମରେ ବିଦ୍ୟୁତ୍ ନିଃସରଣ ପ୍ରକ୍ରିୟା ସେ ଲକ୍ଷ୍ୟ କରୁଥାଆନ୍ତି। କାଚନଳୀଟି କଳା କାଗଜରେ ଆଚ୍ଛାଦିତ ହୋଇଥାଏ। କୋଠରୀଟି ସଂପୂର୍ଣ୍ଣ ଅନ୍ଧକାର ରହିଥାଏ। ଟେବୁଲ୍ ଉପରେ ରଖାଯାଇଥିବା ବ୍ୟାରିଅମ୍ ପ୍ଲାଟିନୋସ୍ୟାନାଇଡ୍ ନାମକ ଏକ ରାସାୟନିକ ପଦାର୍ଥର ସ୍ଫଟିକ ଗୁଡ଼ିକର ଅନ୍ଧାର ମଧ୍ୟରୁ ଏକ ପ୍ରକାର ଆଲୋକ ବିଚ୍ଛୁରିତ ହେଉଥିବାର ସେ ଲକ୍ଷ କଲେ। ପୁଣି ବିଦ୍ୟୁତ୍ ବନ୍ଦ କଲେ ସ୍ଫଟୀକରୁ ନିର୍ଗତ ହେଉଥିବା ଆଲୋକ ଅଦୃଶ୍ୟ ହେଉଛି। ପ୍ରଫେସରଙ୍କର ଏହି ପର୍ଯ୍ୟବେକ୍ଷଣରୁ ଜନ୍ମ ନେଲା ଯୁଗାନ୍ତକାରୀ ଏକ୍ସ୍-ରେ'।

ପ୍ରଫେସର ଚିନ୍ତା କଲେ ଯେ, ନିଶ୍ଚୟ କୌଣସି ଅଦୃଶ୍ୟ ଓ ଅଜଣା ରଶ୍ମି କାଥୋଡ୍-ରେ' ଟ୍ୟୁବ୍‌ର ଆଚ୍ଛାଦନକୁ ଭେଦି ବାହାରକୁ ଆସୁଛି। ସେହି ରଶ୍ମି ବ୍ୟାରିଅମ୍ ପ୍ଲାଟିନୋସାନାଇଡ୍‌ର ସ୍ଫଟିକ ଉପରେ ଯେଉଁ ପ୍ରତିକ୍ରିୟା କରୁଛି ତାହା ଫଳରେ ସ୍ଫଟୀକରୁ ଅନ୍ଧକାରରେ ଦୀପ୍ତିଶୀଳତା ପ୍ରକାଶ ପାଉଛି।

ପ୍ରଥମରୁ ଏହି ଅଜଣା ଓ ଅଦୃଶ୍ୟ ରଶ୍ମି ବିଷୟରେ ପ୍ରଫେସର୍ ରନ୍‌ଜନ୍ ବିଶେଷ କିଛି ଜାଣି ନଥିଲେ। ତେଣୁ ସେ ତା'ର ନାମକରଣ କଲେ 'ଏକ୍ସ୍-ରେ'।

ଏହି ନୂତନ ଉଦ୍‌ଭାବନ ବିଷୟରେ ସେ ଅଧିକରୁ ଅଧିକ ପରୀକ୍ଷା ନିରୀକ୍ଷା କରି ଜାଣିପାରିଲେ ଯେ, ଏହା କାଗଜ ତଥା ଧାତବ ପଦାର୍ଥର ପତଳା ଆବରଣକୁ ଭେଦ କରିପାରେ। କିନ୍ତୁ ଅନ୍ୟାନ୍ୟ ଆଲୋକପରି ଏହି ରଶ୍ମି ଆଖିକୁ ଦେଖାଯାଏ ନାହିଁ।

ଫଟୋଗ୍ରାଫିକ୍ ପ୍ଲେଟ୍ ଉପରେ ସାଧାରଣ ଆଲୋକର ପ୍ରଭାବ ରହିଛି। ନୂତନ ଭାବେ ଉଦ୍‌ଭାବିତ ଏହି ରଶ୍ମିର ଫଟୋ ପ୍ଲେଟ୍ ଉପରେ କି ପ୍ରଭାବ ପଡୁଛି ତାହା ଜାଣିବା ପାଇଁ ପ୍ରଫେସର ରନଜନ୍ ତାଙ୍କ ସ୍ତ୍ରୀଙ୍କ ହାତକୁ ଏକ ଫଟୋ ପ୍ଲେଟ୍ ଉପରେ ରଖି ତା'ଉପରେ ଏକ୍ସ୍-ରେ' ଛାଡ଼ିଲେ। ପରେ ଯେତେବେଳେ ସେହି ଫଟୋ ପ୍ଲେଟ୍ ଧୁଆ ହେଲା, ତା'ର ଫଳାଫଳ ଚିକିତ୍ସା ବିଜ୍ଞାନ ପାଇଁ ଏକ ନୂତନ ଦିଗ୍‌ବଳୟର ଆଭାସ ମିଳିଲା। ରନ୍‌ଜନ୍ ଦମ୍ପତି ତଥା ତାଙ୍କର ସହାୟକ ଦ୍ୱୟ ଚକିତ ହୋଇ ଚାହିଁ ରହିଲେ। ଫଟୋ ପ୍ଲେଟ୍‌ରେ ଶ୍ରୀମତୀ ରନ୍‌ଜନ୍‌ଙ୍କ ହାତରେ ହାଡ଼ଗୁଡ଼ିକ ନିର୍ଭୁଲ୍ ଭାବେ ଚିତ୍ରିତ ହୋଇଥାଏ। ଫଟୋ ଉଠାହେଲା ବେଳେ ସେ ତାଙ୍କର ମଝି ଆଙ୍ଗୁଠିରେ ଯେଉଁ ସୁନା ମୁଦିଟି ପିନ୍ଧିଥିଲେ ତାହା ମଧ୍ୟ ପରିଷ୍କାର ଭାବେ ଦେଖାଯାଉଥାଏ। ହାତର ହାଡ଼ ଚାରିପାଖେ ରହିଥିବା କୋମଳ ତନ୍ତୁସମୂହ ହାଲ୍‌କାଭାବେ ଚିତ୍ରିତ ହୋଇଥାଏ। ମାନବ ଇତିହାସରେ ଏହାହିଁ ପ୍ରଥମ ଏକ୍ସ୍-ରେ ଫଟୋ।

ଯେତେବେଳେ ପ୍ରଫେସର୍ ରନ୍‌ଜନ୍‌ଙ୍କର ଉଦ୍‌ଭାବନର ଖବର ଦେଶ ବିଦେଶରେ ପ୍ରଚାରିତ ହେଲା, ସାରା ବିଶ୍ୱରେ ଆନନ୍ଦର ଢେଉ ଖେଳିଗଲା। ଦେଶ ବିଦେଶରେ ତାଙ୍କୁ ସମ୍ମାନିତ କରାଗଲା। ଶେଷରେ ୧୯୦୧ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଥମ କରି ପ୍ରଫେସର ରନ୍‌ଜନ୍‌ଙ୍କୁ ସମର୍ପଣ କରାଗଲା। ତା'ର ପରବର୍ତ୍ତୀ କାଳରେ

ସେହି ଅଜଣା ରଶ୍ମି ବା ଏକ୍‌ସ୍‌-ରେ' ପ୍ରଫେସରଙ୍କ ନାମାନୁସାରେ ରନ୍‌ଜନ୍ ରଶ୍ମି ନାମରେ ଅଭିହିତ ହେଲା।

ତାଙ୍କ ଜୀବନ କାଳ ଭିତରେ ସେ କେବଳ 'ଏକସ୍‌-ରେ' ନୁହେଁ, ଅନ୍ୟ ଅନେକ ବିଷୟରେ ମଧ୍ୟ ଗବେଷଣା କରି ତାଙ୍କର ତଥ୍ୟମାନ ବିଜ୍ଞାନ ଜଗତକୁ ଦାନ କରିଛନ୍ତି। କିନ୍ତୁ ଦୁଃଖର କଥା ଯେଉଁ ଏକ୍‌ସ୍‌-ରେ ପାଇଁ ତାଙ୍କର ଖ୍ୟାତି ପୃଥିବୀର କୋଣ ଅନୁକୋଣକୁ ବ୍ୟାପିଥିଲା ସେଇ ଏକ୍‌ସ୍‌-ରେ' ହିଁ ତାଙ୍କର ମୃତ୍ୟୁର କାରଣ ହେଲା।

ରଂଜନ ରଶ୍ମିର ପ୍ରଭାବ ନିୟମିତ ଅନାବୃତ ଶରୀର ଉପରେ ପଡ଼ିଲେ କ୍ୟାନସର୍ ହେବାର ଆଶଙ୍କା ଥାଏ। ସେଥିପାଇଁ ଯେଉଁମାନେ ରଂଜନ୍ ରଶ୍ମି ବିଭାଗରେ କାର୍ଯ୍ୟ କରନ୍ତି ସେମାନେ ସୀସା ଓ ରବର ନିର୍ମିତ ଏକ ପୋଷାକ ବ୍ୟବହାର କରି ଏହାର କୁପ୍ରଭାବରୁ ନିଜକୁ ରକ୍ଷା କରିଥାନ୍ତି। ପ୍ରଫେସର୍ ରନ୍‌ଜନ୍‌ଙ୍କୁ ଏହା ସେତେବେଳେ ଜଣା ନଥିଲା। ତେଣୁ ସେ ଓ ତାଙ୍କର ଦୁଇଜଣ ସହକାରୀ ଜୀବନ୍ ସାରା ଏହି ରଂଜନ୍ ରଶ୍ମିର ପ୍ରଭାବରେ ଆସିଥିବା ହେତୁ ଶେଷରେ କ୍ୟାନ୍‌ସର୍‌ର ଶିକାର ହୋଇ ପ୍ରାଣ ହରାଇଲେ। ୭୭ ବର୍ଷ ବୟସରେ ସେ ୧୯୨୩ ମସିହା ଫେବୃଆରୀ ୧୦ ତାରିଖ ଦିନ ଜର୍ମାନୀର ମ୍ୟୁନିକ୍ ସହରରେ ମୃତ୍ୟୁବରଣ କରିଥିଲେ।

ପଦାର୍ଥ ବିଜ୍ଞାନର ସେହି ମହାନ୍ ପ୍ରଫେସର୍ ଆଜି ମରି ବି ଅମର। ଆଧୁନିକ ଚିକିତ୍ସା ବିଜ୍ଞାନ ସବୁଦିନ ପାଇଁ ତାଙ୍କ ଠାରେ ଋଣୀ ହୋଇରହିବ।





# ସାର୍ ରୋନାଲ୍ଡ୍ ରସ୍ ଓ ମ୍ୟାଲେରିଆ ପରଜୀବୀ

୧୮୫୭–୧୯୩୨ ମସିହା

ଅ। ଦି ମ
କାଳରୁ ମ୍ୟାଲେରିଆ
ରୋଗ ମାନବ
ଜଗତର ଏକ ପ୍ରଧାନ
ଶତ୍ରୁ। ବିଂଶ ଶତାବ୍ଦୀ
ପୂର୍ବରୁ ଲୋକଙ୍କର

ଧାରଣା ଥିଲା ଯେ, ଏହି ରୋଗ ଦୁର୍ଗନ୍ଧଯୁକ୍ତ ଏକ ଗ୍ୟାସ୍ ଯୋଗୁଁ ବ୍ୟାପିଥାଏ। ଦକ୍ଷିଣ ଆମେରିକା, ଦକ୍ଷିଣ-ପୂର୍ବ ଏସିଆ, ଆଫ୍ରିକା ତଥା ସମୁଦ୍ର ଉପକୂଳବର୍ତ୍ତୀ ଅଂଚଳ ମାନଙ୍କରେ ଏହି ରୋଗ ଅଧିକ ଦେଖାଯାଏ। ଇତି ମଧ୍ୟରେ ମ୍ୟାଲେରିଆର କାରଣ, ଚିକିତ୍ସା ପାଇଁ ସାଧନ ତଥା ପ୍ରତିଷେଧକ ବ୍ୟବସ୍ଥା ଆଦି ପ୍ରତ୍ୟେକ କ୍ଷେତ୍ରରେ ପ୍ରଭୂତ ଉନ୍ନତି ସାଧିତ ହୋଇଥିଲେ ହେଁ ବିଶ୍ୱରେ ପ୍ରତିବର୍ଷ ଅନେକ ଲୋକ ଏହି ରୋଗରେ ପ୍ରାଣ ହରାଉଛନ୍ତି। ଆକ୍ରାନ୍ତ ହେଉଥିବା ଲୋକଙ୍କ ସଂଖ୍ୟା ସେହି ଅନୁଯାୟୀ ଅନେକ ବେଶୀ। ତେବେ ଏହି ରୋଗର ପ୍ରକୃତ ତଥ୍ୟ ମଣିଷ ଜାଣିବା ପରେ ଆନୁପାତିକ ହାରରେ ଆକ୍ରାନ୍ତ ହେଉଥିବା ଲୋକସଂଖ୍ୟା ତଥା ମୃତ୍ୟୁହାର ପୂର୍ବ ଅପେକ୍ଷା ଯଥେଷ୍ଟ କମ୍ ହେଉଛି।

ଯେ କୌଣସି ରୋଗର ପ୍ରକୃତ କାରଣ ଜାଣି ନଥିଲେ ତାହାର ଚିକିତ୍ସା ବା ପ୍ରତିଷେଧକ ବ୍ୟବସ୍ଥା କରିବା ଦୁରୁହ ବ୍ୟାପାର। ସେଥିପାଇଁ ପୂର୍ବେ ମ୍ୟାଲେରିଆ ରୋଗ ଏତେ ଭୟାନକ ଆକାର ଧାରଣ କରି ପ୍ରତିବର୍ଷ ମାନବ ସମାଜର ଅକଳନ କ୍ଷତି ସାଧନ କରୁଥିଲା। ଯେଉଁ ବୈଜ୍ଞାନିକଙ୍କ ଆପ୍ରାଣ ଚେଷ୍ଟା ଫଳରେ ଏହା ମଣିଷର ଆୟତ୍ତାଧୀନ ହୋଇପାରିଛି ତାଙ୍କ ନାମ ସାର୍ ରୋନାଲଡ୍ ରସ୍। ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହି ଆବିଷ୍କାର ଫଳରେ ମାନବ ସମାଜର ଯେଉଁ କଲ୍ୟାଣ ସାଧନ ହୋଇପାରିଲା ସେଥିପାଇଁ ୧୯୦୨ ମସିହାରେ ରସ୍‌ଙ୍କୁ ଚିକିତ୍ସା ବିଜ୍ଞାନରେ ନୋବେଲ୍ ପୁରସ୍କାର ପ୍ରଦାନ କରାଯାଇଥିଲା।

ଏହି ସ୍ୱନାମଧନ୍ୟ ବୈଜ୍ଞାନିକ ଚିକିତ୍ସା ଜଗତକୁ ତାଙ୍କର ଅବଦାନ ପାଇଁ ଚୀର ସ୍ମରଣୀୟ। କିନ୍ତୁ କେହି କେବେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ, ସେ ଦିନେ ଚିକିତ୍ସା ଜଗତରେ ହୀରାପରି ଚମକି ଉଠିବେ। ୧୮୫୭ ମସିହା ମେ' ମାସ ୧୩ ତାରିଖ ଦିନ ଉତ୍ତର ପ୍ରଦେଶର କୁମାଉଁ ପର୍ବତମାଳା ପାଦଦେଶରେ ଆଲମୋରା ସହରରେ ଏକ ଆଙ୍ଗ୍ଲୋଇଣ୍ଡିଆନ୍ ପରିବାରରେ ସେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କର ୧୦ଟି ଭାଇ ଭଉଣୀଙ୍କ ମଧ୍ୟରେ ସେ ସମସ୍ତଙ୍କ ଠାରୁ ବଡ଼ ଥିଲେ। ତାଙ୍କ ପିତା ଥିଲେ ବ୍ରିଟିଶ୍ ସୈନ୍ୟ ବାହିନୀର

ଜଣେ ସେନାଧ୍ୟକ୍ଷ। ସେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଅବସ୍ଥାପିତ ହୋଇଥିଲେ। ପିତାଙ୍କ ଅନୁଶାସନ ଯୋଗୁଁ ସେ ଖୁବ୍ ପିତୃ-ମାତୃ ଭକ୍ତ ଥିଲେ। ପିଲାଦିନୁ କବିତା ଓ ଗଳ୍ପ ଆଦି ଲେଖିବା, ଗୀତ ଗାଇବା, ସଙ୍ଗୀତ ଶିକ୍ଷା ଓ ପ୍ରକୃତି ପର୍ଯ୍ୟବେକ୍ଷଣ କରିବାରେ ସେ ଅଧିକ ମନଯୋଗ ଦେଉଥିଲେ। ରସ୍‌ଙ୍କର ଇଛାଥିଲା ସେ ସାହିତ୍ୟ ଅଧ୍ୟୟନ କରିବେ। କିନ୍ତୁ ତାଙ୍କ ପିତାଙ୍କ ଇଛା ଥିଲା ସେ ଏଫ.ଆର୍.ସି.ଏସ୍. କରି ଭାରତୀୟ ଚିକିତ୍ସା ସେବାରେ ଯୋଗଦାନ କରିବେ। ଶେଷରେ ନିଜର ପିତୃଭକ୍ତି ପାଖରେ ତାଙ୍କର କବି ମାନସ ହାର୍ ମାନିଲା। ମାତ୍ର ୧୭ ବର୍ଷ ବୟସରେ ସେ ଇଂଲଣ୍ଡରେ ବାର୍ଥୋଲମିଓ ହସ୍‌ପିଟାଲ୍‌ରେ ଡାକ୍ତରୀ ଛାତ୍ରଭାବେ ନାମ ଲେଖାଇଲେ।

ପ୍ରଥମରୁ ଚିକିତ୍ସା ଶାସ୍ତ୍ର ତାଙ୍କୁ ରସହୀନ ଲାଗିଲା। କଲେଜ ପାଠପଢ଼ା ବେଳେ ମଧ୍ୟ ତାଙ୍କ କଲମରୁ କବିତା ଝରିଲା। ତଥାପି କୌଣସି ପ୍ରକାରେ ସେଠାରୁ ଉତ୍ତୀର୍ଣ୍ଣ ହୋଇ ଏମ୍.ଆରସି.ଏସ୍. ମଧ୍ୟ କଲେ। କିନ୍ତୁ ତା'ପରେ ସେ ଭାରତୀୟ ଚିକିତ୍ସା ସେବାରେ ଯୋଗ ଦେବା ପାଇଁ ଯେଉଁ ପରୀକ୍ଷା ଦେଲେ ସେଥିରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ। ଦ୍ୱିତୀୟ ଥର ପରୀକ୍ଷା ଦେବାକୁ ଅପେକ୍ଷା ନକରି ଲଣ୍ଡନରୁ ନିୟୁର୍କ ଯାଉଥିବା ଏକ ଜାହାଜରେ ସେ ସର୍ଜନ ଭାବେ ଯୋଗ ଦେଲେ। ସେଠାରେ ଦୁଇ ବର୍ଷ ରହି ସେ ପୁଣି ଫେରି ଆସିଲେ ଭାରତବର୍ଷକୁ। ମାଡ୍ରାସ୍ ଚିକିତ୍ସା ସେବାରେ ଯୋଗଦେଇ ବର୍ମା ଯୁଦ୍ଧ ବେଳେ ସେଥିରେ ଅଂଶଗ୍ରହଣ କରିଥିଲେ।

ସେତେବେଳେ ଭାରତବର୍ଷରେ ଲୋକସଂଖ୍ୟା ୧୫ କୋଟି। ତନ୍ମଧ୍ୟରୁ ପ୍ରତ୍ୟେକ ବର୍ଷ ପ୍ରାୟ ୧୦ ଲକ୍ଷ ଲୋକ ମ୍ୟାଲେରିଆ ପ୍ରକୋପରେ ପ୍ରାଣ ହରାଉଥାନ୍ତି। ଏକ ପ୍ରକାର ଦୁର୍ଗନ୍ଧଯୁକ୍ତ ବାୟୁ ଏହାର କାରଣ ବୋଲି ସେତେବେଳେ ମଣିଷର ଧାରଣା ଥିଲା। ଏହା ମ୍ୟାଲେରିଆର (ଇଟାଲିଆନ୍ ଶବ୍ଦ - ଖରାପ ବାୟୁ) ନାମ କରଣରୁ ଜଣାପଡ଼େ। ରସ୍ ତାଙ୍କର ଭାରତ ରହଣୀ ମଧ୍ୟରେ ଏହି ରୋଗର ଲକ୍ଷଣମାନ ଖୁବ୍ ମନଯୋଗ ଦେଇ ଲକ୍ଷ୍ୟ କଲେ। କମ୍ପ ଦେଇ ଜ୍ୱର ଆସିବା, ଝାଳ ଦେଇ ଜ୍ୱର ଉପଶମ ହେବା ତଥା ନିୟମିତ ବ୍ୟବଧାନରେ ଜ୍ୱର ହେବା, ପ୍ଲିହା ଓ ଯକୃତ ବଢ଼ିଯିବା,

ରକ୍ତହୀନତା, ମୁଣ୍ଡବ୍ୟଥା ଇତ୍ୟାଦି ଲକ୍ଷଣ ସହିତ ଉଚ୍ଚ ମୃତ୍ୟୁହାର ତାଙ୍କ କବି ପ୍ରାଣରେ ସତତ କମ୍ପନ ସୃଷ୍ଟି କଲା। ଏହି ରୋଗର କାରଣ ଅନୁଧ୍ୟାନ କରିବା ପାଇଁ ମନେ ମନେ ଦୃଢ଼ ଶପଥ କରି ସେ ପୁଣି ଫେରିଲେ ଇଂଲଣ୍ଡକୁ।

ତାଙ୍କ ଜୀବନର ଲକ୍ଷ୍ୟ ସାଧନ ପାଇଁ ସେ ୧୮୮୯ ମସିହାରେ ଜନସ୍ୱାସ୍ଥ୍ୟ ତଥା ପ୍ରତିଷେଧକ ବିଜ୍ଞାନରେ ଡିପ୍ଲୋମେଟ୍ ଉପାଧି ପାଇବା ପରେ ତାଙ୍କ ଗବେଷଣା ଆରମ୍ଭ କଲେ। ୧୮୮୦ ମସିହାରେ ଆଲପୋନ୍‌ଜ ଲାଭେରନ୍ ମ୍ୟାଲେରିଆ ଜୀବାଣୁକୁ ଚିହ୍ନିତ କରାଇ ଅନେକ ପୁରସ୍କାର ବିଜୟୀ ହୋଇଥିଲେ। ପାଟ୍ରିକ୍ ମାନସନ୍ ନାମକ ଅନ୍ୟ ଜଣେ ବୈଜ୍ଞାନିକ ୧୮୭୯ ମସିହାରେ ଫାଇଲେରିଆ ରୋଗର ଜୀବାଣୁକୁ ଚିହ୍ନିତ କରାଇଥିଲେ। କିନ୍ତୁ ଏହି ସବୁ ଜୀବାଣୁ ମଣିଷ ଶରୀର ଭିତରେ କିପରି ପ୍ରବେଶ କରେ ଓ ଏହି ଜୀବାଣୁର ଜୀବନଚକ୍ର କିପରି ଗଢ଼ିଉଠେ ଇତ୍ୟାଦି ବିଷୟରେ ସେମାନେ ଜାଣି ନଥିଲେ। ତଥାପି ସେହି ବୈଜ୍ଞାନିକମାନଙ୍କ ସହାୟତାରେ ରସ୍ ତାଙ୍କର ଗବେଷଣା କରିଲେ। ମାନସନ୍‌ଙ୍କ ତତ୍ତ୍ୱାବଧାନରେ ହାଇଦ୍ରାବାଦ୍‌ସ୍ଥିତ ବେଗୁମ୍‌ପେଟ୍ ହସ୍‌ପିଟାଲ୍‌ରେ ତାଙ୍କର ଗବେଷଣା ଦୀର୍ଘ ଦୁଇ ବର୍ଷ ଚାଲିଲା।

ମ୍ୟାଲେରିଆ ଅଧ୍ୟୁଷିତ ବିଭିନ୍ନ ଅଂଚଳ ପରିଦର୍ଶନରେ ଯିବାବେଳେ ସେ ଲକ୍ଷ୍ୟ କଲେ ସେହି ଅଂଚଳଗୁଡ଼ିକ ଚାରିପାଖେ ପଚାସଢ଼ା ନାଳ ନର୍ଦ୍ଦମା ତଥା ସନ୍ତସନ୍ତିଆ ପଡ଼ିଆ ମାନଙ୍କରେ ପ୍ରବଳ ମଶା। ତାହାକୁ ଦେଖି ତାଙ୍କ ମନରେ ସନ୍ଦେହ ହେଲା। ସେ ଆଶଙ୍କା କଲେ ମ୍ୟାଲେରିଆ ସହିତ ଏହି ମଶାର କିଛି ସଂପର୍କ ରହିଛି କି ? ଫଳରେ ତାଙ୍କ ଗବେଷଣାରେ ଏକ ନୂଆ ଅଧ୍ୟାୟ ସୃଷ୍ଟି ହେଲା। ମ୍ୟାଲେରିଆ ବହୁଳ ଅଂଚଳରୁ ମଶାଗୁଡ଼ିକୁ ଧରିଆଣି ସେ ତାଙ୍କ ଗବେଷଣାଗାରରେ ପରୀକ୍ଷା କରିବାକୁ ଲାଗିଲେ।

ଗୋଟିଏ ଭଙ୍ଗା ଦଦରା ଘରେ ପୁରୁଣା ଅଣୁବୀକ୍ଷଣ ଯନ୍ତ୍ର ଓ ଅନ୍ୟାନ୍ୟ କେତେକ ଶସ୍ତା ଓ ପୁରାତନ ଯନ୍ତ୍ରପାତି। ସେତିକି ସମ୍ବଳ ତାଙ୍କ, ପରୀକ୍ଷାଗାର ମଧ୍ୟରେ। କିନ୍ତୁ ତା'ର ଚାରିକାନ୍ଥ ଭିତରେ ଗୋଟିଏ ଉତ୍ସର୍ଗୀକୃତ ପ୍ରାଣ ଦିନରାତି ଭୋକ ଶୋଷ ଭୁଲି ସତ୍ୟର ସନ୍ଧାନ ପାଇଁ ବ୍ୟାକୁଳ। ହଠାତ୍

ଦିନେ ରସ୍ ଦେଖିଲେ ମଶାର ପେଟ ଭିତରେ ମଣିଷ ରକ୍ତ। ତା ଭିତରେ ମ୍ୟାଲେରିଆ ଜୀବାଣୁ। ପୁଣି ଅନ୍ୟ କେତେକ ମଶା ବ୍ୟବଚ୍ଛେଦ କରି ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିଲେ ଯେ, ସେମାନଙ୍କ ଲାଳଗ୍ରନ୍ଥିରେ ମଧ୍ୟ ମ୍ୟାଲେରିଆ ଜୀବାଣୁ। ରସ୍ଙ୍କର ପ୍ରତିଜ୍ଞା ପୂରଣ ହେଲା।

ମ୍ୟାଲେରିଆ ରୋଗୀକୁ ମାଈ ଏନୋଫିଲିସ୍ ମଶା କାମୁଡ଼ିଲେ ଜୀବାଣୁ ମଶା ପେଟ ଭିତରକୁ ଚାଲିଯାଏ। ବିଭିନ୍ନ ଅବସ୍ଥା ଅତିକ୍ରମ କରି ଏହି ଜୀବାଣୁ ପୁଣି ମଶାର ଲାଳଗ୍ରନ୍ଥିକୁ ଆସିଯାଏ। ଏହି ଅବସ୍ଥାରେ ଯଦି ମଶା ଏକ ସୁସ୍ଥ ମଣିଷକୁ କାମୁଡ଼େ ତେବେ ମ୍ୟାଲେରିଆ ଜୀବାଣୁ ମଣିଷ ଶରୀରକୁ ଯାଇ ତାକୁ ରୋଗରେ ଆକ୍ରାନ୍ତ କରେ। ମ୍ୟାଲେରିଆ ଜୀବାଣୁ ଏକ ପରାଂଗପୁଷ୍ଟ ହୋଇଥିବାରୁ ଏହା ମଣିଷର ଲୋହିତ ରକ୍ତ କଣିକା ଗୁଡ଼ିକର ପ୍ରଭୂତ କ୍ଷତି କରେ। ତେଣୁ ମ୍ୟାଲେରିଆ ରୋଗୀର ରକ୍ତହୀନତା ଧୀରେ ଧୀରେ ବଢ଼ିଚାଲେ।

ମ୍ୟାଲେରିଆ ଜୀବାଣୁର ଶ୍ରେଣୀ ପ୍ଲାଜ୍‌ମୋଡ଼ିଅମ୍। ବିଭିନ୍ନ ପ୍ଲାଜ୍‌ମୋଡ଼ିଅମ୍‌ର ଜୀବନଚକ୍ରର ବିଶଦ ଆଲୋଚନା ରୋନାଲଡ୍ ରସ୍ ୧୮୯୭ ମସିହା ଅଗଷ୍ଟ ୨୦ ତାରିଖରେ କରିଥିଲେ। ପ୍ରଥମେ ପ୍ରଥମେ ଅନେକ ସ୍ଥାନରେ ରସ୍‌ଙ୍କ ମତକୁ ଅବଜ୍ଞା କରାଗଲା। କିନ୍ତୁ ଅନେକ ବିଶ୍ୱବିଖ୍ୟାତ ବୈଜ୍ଞାନିକ ତାଙ୍କୁ ସମର୍ଥନ ଜଣାଇଲେ। ସେମାନଙ୍କ ମଧ୍ୟରେ ରବର୍ଟ କଚ୍, ଉଇଲିୟମ୍ ଅସ୍‌ଲର୍, ପାଟ୍ରିକ୍ ମାନସନ୍ ଆଦି ଅନ୍ୟତମ। ଫଳରେ ସମଗ୍ର ପୃଥିବୀ ତାଙ୍କର ଏହି ଯୁଗାନ୍ତକାରୀ ଆବିଷ୍କାରକୁ ସ୍ୱୀକୃତି ଦେଲା।

ଏହିଠାରେ ତାଙ୍କର ପ୍ରଚେଷ୍ଟାର ଅନ୍ତ ହେଲା ନାହିଁ। ପ୍ଲାଜ୍‌ମୋଡ଼ିଅମ୍ ହିଁ ମ୍ୟାଲେରିଆର କାରଣ ବୋଲି ନିଶ୍ଚିତ ହେବା ପରେ ରୋଗର ଚିକିତ୍ସା ବିଧାନ କିପରି ସହଜ ଓ ସରଳ ହୋଇପାରିବ ଏବଂ ଏହାର ପ୍ରତିଷେଧକ ବ୍ୟବସ୍ଥା ମଧ୍ୟ କିପରି ହେବ ସେଥିପାଇଁ ରସ୍ ଉପାୟ ଖୋଜିବାକୁ ଲାଗିଲେ।

ପେରୁରେ ବୋଧହୁଏ ପ୍ରଥମେ କୁଇନାଇନ୍‌ର ପ୍ରଚଳନ ଆରମ୍ଭ ହୋଇଥିଲା। ପରୀକ୍ଷା କରି ରସ୍ ଦେଖିଲେ ଯେ, ଏହାଦ୍ୱାରା ରୋଗ ଜୀବାଣୁ ମରିଯାଉଛନ୍ତି ସତ କିନ୍ତୁ କୁଇନାଇନ୍ ଚିକିତ୍ସାରେ କେତେଗୁଡ଼ିଏ ଅସୁବିଧା ଥିଲା। ଏହା ସିଂକୋନା ନାମକ ଏକ ଗଛ ବକଳରୁ ଉତ୍ପାଦିତ ହେଉଥିବାରୁ ବହୁ ପରିମାଣରେ ଔଷଧ ଲୋକମାନଙ୍କୁ ଯୋଗାଇବା ସମ୍ଭବ ନଥିଲା। ତେଣୁ ରୋଗୀ ସଂଖ୍ୟା ଅନୁପାତରେ ଔଷଧର ପରିମାଣ ପର୍ଯ୍ୟାପ୍ତ ହେଉ ନଥିଲା। ପେରୁରୁ ଏହି ଔଷଧ ୧୮୨୦ ମସିହାରେ ୟୁରୋପ ଓ ପରେ ପୃଥିବୀର ଅନ୍ୟାନ୍ୟ ରାଷ୍ଟ୍ରକୁ ମଧ୍ୟ ପ୍ରେରିତ ହୋଇଛି। କିନ୍ତୁ ସମଗ୍ର ମାନବ ସମାଜର ସମସ୍ୟା ସମାଧାନ କରିବା ପାଇଁ ଏହା ଯଥେଷ୍ଟ ହେଉନଥିବାରୁ ମ୍ୟାଲେରିଆର ଚିକିତ୍ସା ପାଇଁ ବୈକଳ୍ପିକ ଏକ ଔଷଧର ଆବଶ୍ୟକତା ଅନୁଭୂତ ହେଲା।

ଚିକିତ୍ସା କ୍ଷେତ୍ରରେ ପ୍ରତିଷେଧକ ବ୍ୟବସ୍ଥାର ଯେଉଁ ମହାନ୍ ଭୂମିକା ରହିଛି ବୋଧହୁଏ ରୋନାଲଡ୍ ରସ୍ ପ୍ରଥମ କରି ଅନୁଭବ କରିଥିଲେ। ସେ ଚିନ୍ତାକରି ଜାଣିପାରିଲେ ଯେ, ଔଷଧର ଅଭାବରୁ ରୋଗୀକୁ ସିନା ଚିକିତ୍ସା କରିହେଉ ନାହିଁ କିନ୍ତୁ ରୋଗ କିପରି ମଣିଷକୁ ନହେବ ସେ ବ୍ୟବସ୍ଥା କରିପାରିଲେ ତାହା ସମାଜପ୍ରତି ଅଧିକ ମଙ୍ଗଳପ୍ରଦ ହେବ। ପ୍ଲାଜ୍‌ମୋଡ଼ିଅମ୍ ପରାଂଗପୁଷ୍ଟର ଜୀବନ ଚକ୍ରରୁ ଜଣାପଡ଼େ ଯେ, ଏହାର କେତେକ ଅବସ୍ଥା ମଶା ପେଟରେ ଓ ଅନ୍ୟ କେତେକ ମଣିଷ ଶରୀରରେ ସଂଗଠିତ ହୁଏ। ତେଣୁ ଏହି ଜୀବନଚକ୍ରରେ ଯଦି ବାଧା ସୃଷ୍ଟି କରାଯାଏ ତେବେ ଏହି ପରାଂଗପୁଷ୍ଟର ବିଲୟ ଘଟିବ ଏବଂ ଦିନେ ନା ଦିନେ ସମଗ୍ର ମାନବ ସମାଜରୁ ଏହି ରୋଗକୁ ଦୂର କରାଯାଇପାରିବ।

ତାପରେ ୧୯୦୦ ମସିହାରେ ସେ ଇଂଲଣ୍ଡ ଫେରି ତାଙ୍କର ବିଧବଦ୍ଧ ଯୋଜନା ପ୍ରସ୍ତୁତକରି ପୃଥିବୀର ମ୍ୟାଲେରିଆ ଅଧ୍ୟୁଷିତ ଅଞ୍ଚଳମାନଙ୍କୁ ତାହା ଜଣାଇଲେ। ଫଳରେ ପ୍ରତ୍ୟେକ ଦେଶରେ ସାମୁହିକ ଭାବେ ମଶା ଉପରେ ଆକ୍ରମଣ ଆରମ୍ଭ ହେଲା।

ଏହି କାର୍ଯ୍ୟକ୍ରମ ମାଧ୍ୟମରେ ମଶା ଡିମ୍ବ ଦେଉଥିବା ସ୍ଥାନ ଗୁଡ଼ିକ ଯଥା ନାଳ, ନର୍ଦ୍ଦମା, ସନ୍ତସନ୍ତିଆ ସ୍ଥାନ, ଜମି ରହିଥିବା ପାଣି, ଜଙ୍ଗଲିଆ ଗଛ, ବୁଦା ଇତ୍ୟାଦି ପ୍ରତି ସମସ୍ତେ ସଚେତନ ହେବାକୁ ଲାଗିଲେ। ସେ ସବୁ ସ୍ଥାନ ପରିଷ୍କାର ହେବା ଫଳରେ ମଶାର ବଂଶବୃଦ୍ଧି ହେବାରେ ବାଧାସୃଷ୍ଟି ହେଲା। ଏହା ବ୍ୟତୀତ ତାଙ୍କ ଯୋଜନା ଫଳରେ ଅନ୍ୟାନ୍ୟ ଅନେକ କାର୍ଯ୍ୟକ୍ରମ ହାତକୁ ନିଆଗଲା। ଫଳତଃ ଧୀରେ ଧୀରେ ମ୍ୟାଲେରିଆ ରୋଗୀଙ୍କ ଆପାତନ ହାର କମିବାକୁ ଲାଗିଲା।

ଅବଶ୍ୟ ଆଜିକାଲି ମ୍ୟାଲେରିଆ ବିରୁଦ୍ଧରେ ଆହୁରି ଅନେକ ନୂଆ ପଦକ୍ଷେପ ଗୃହୀତ ହୋଇଛି। କ୍ଲୋରୋକୁଇନ୍, ପ୍ରାଇମାକୁଇନ୍ ଇତ୍ୟାଦି ଅନେକ ନୂଆ ଔଷଧର ପ୍ରଚଳନ ତଥା ଡି.ଡି.ଟି, ଗ୍ୟାମାକ୍ସିନ୍, ବି.ଏଚ୍.ସି., ମାଲାଥିଅନ୍ ଓ ପାଇରଥ୍ରିଏଡ୍ସ ଇତ୍ୟାଦିର ସିଞ୍ଚନ ଓ ଟିଫାମେସିନ୍ ସାହାଯ୍ୟରେ ଶତକଡ଼ା ୧୦ ଭାଗ ମାଲାଥିଆନ୍ ଗ୍ୟାସ୍ ପ୍ରୟୋଗ ଆଦି ଯୋଗୁଁ ମ୍ୟାଲେରିଆ ଯଥେଷ୍ଟ ପରିମାଣରେ ହ୍ରାସ ପାଇଛି। ଏନୋଫେଲିସ୍ ମଶାର ନିରାକରଣ ପାଇଁ ଅନ୍ୟ ଅନେକ ନୂଆ ଉପାୟ ମଧ୍ୟ ଅନୁସୃତ ହେଉଛି। ମଶାର ଶୂକକୁ ନଷ୍ଟ କରିବା ପାଇଁ ଏକ ପ୍ରକାର ମାଛ ଜାଆଁଳ ଯେଉଁ ଖାଲ ଜାଗାରେ ପାଣି ଜମି ରହିଥାଏ ସେଠାରେ ଛଡ଼ାଯାଉଛି। ନର୍ଦ୍ଦମାଗୁଡ଼ିକରେ ଏମ୍. ଏଲ୍. ଓ, କିରୋସିନ୍ ଆଦି ତୈଳ ସିଞ୍ଚନ କରାଯାଉଛି ଇତ୍ୟାଦି। ଏ ଦିଗରେ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ସହାୟତା ପ୍ରାୟ ଅଧିକାଂଶ ଦେଶକୁ ମିଳୁଛି। ତେବେ ଏକଥା ସ୍ୱୀକାର କରିବାକୁ ହେବ ଯେ, ଏସବୁର ମୂଳରେ ସାର୍ ରୋନାଲଡ୍ ରସ୍‌ଙ୍କର ପ୍ରେରଣା ହିଁ ରହିଛି।

ପିଲାଦିନେ ଡରକୁଳା, ଯୌବନରେ କବି, ଭାବୁକ, ଔପନ୍ୟାସିକ ଓ ଦାର୍ଶନିକ ରୋନାଲଡ୍ ରସ୍ ଯେ ଦିନେ ଚିକିତ୍ସା ଜଗତର ଶିରୋମଣି ହୋଇ ନୋବେଲ୍ ପୁରସ୍କାର ପାଇବେ ଏକଥା କିଏ ବା ଭାବିଥିଲା ? ଚିର ସ୍ମରଣୀୟ ଏହି ବୈଜ୍ଞାନିକଙ୍କୁ ପରେ ଇଂଲଣ୍ଡରୁ ସାର୍ ଉପାଧି ମିଳିଥିଲା। ୧୯୩୨ ମସିହାରେ ଏହି ମନିଷୀଙ୍କର ମହାପ୍ରୟାଣ ହେଲା।

ଯେଉଁଦିନ ପ୍ରଥମ କରି ସେ ମ୍ୟାଲେରିଆ ରୋଗର କାରଣ ଜାଣିପାରିଥିଲେ ସେଦିନ ତାଙ୍କ କବି ମାନସରୁ ଯେଉଁ କବିତା ଝରିପଡ଼ିଥିଲା ତାହା ସେ ମାନବ ସମାଜକୁ ଉତ୍ସର୍ଗ କରି ଲେଖିଥିଲେ :

*ମୃତ୍ୟୁ ହେ ତୁମେ ଅବିନଶ୍ୱର, ଠିକଣା ତୁମର ଜଣା ନାହିଁ,*
*କୁହୁଡ଼ିଆ ତୁମ ମୁଖମଣ୍ଡଳରେ ସମବେଦନା ତ ଲେଖାନାହିଁ।*
*ଜନ୍ମପରି ତୁମେ ଅନିଶ୍ଚିତ ନୁହଁ, ନିଃସଂଦେହ ତୁମେ ସୁନିଶ୍ଚିତ,*
*ଜୀବ ଜଗତର ସମସ୍ତ ମସ୍ତକ ତବ ପଦ ତଳେ ସଦାନତ।*
*ଅନ୍ଧାର ଚିରି ବିକଟାଳ ରଡ଼ି ଶୁଣାଯାଏ ଯାହା କାନପାଖେ,*
*ତୁମେ ଭାମକାନ୍ତ ବା ଉଷ୍ମଶୀତଳ ସେ'ହିଁ ପରଖେ ସେହି ଦେଖେ।*
*ତୁମେ ହେ ଶକ୍ତି ତୁମେ ହେ ମୁକ୍ତି ତୁମେ ଜୀବନର ଶେଷ ସତ୍ୟ,*
*ନିତ୍ୟ କରଇ ବନ୍ଦନା ତୁମ ପ୍ରକାଶି ନିଜର ଆନୁଗତ୍ୟ।*
*ଅନୁରୋଧ କରେ, 'ମୃତ୍ୟୁ ହେ କେବେ ଆଉ ଆସିବନି ଅନ୍ଧାରରେ,*
*ମଶାରି ଡେଣାରେ ଉଡ଼ିବନି କେବେ ଏନୋଫିଲିସ୍‌ର ଅସ୍ତ୍ରାଗାରେ।*
*ପ୍ଲାଜମୋଡ଼ିୟମ୍‌ର ସାଜୁ ପିନ୍ଧି ଅବା ମ୍ୟାଲେରିଆ ବର୍ଚ୍ଛା ଧରି ଗର୍ବେ,*
*ମୃତ୍ୟୁ ହେ ତୁମେ ଆସିବନି ଆଉ ପ୍ରତିକାର ଜାଣିଛନ୍ତି ସର୍ବେ।*
*ମୃତ୍ୟୁ ହେ ତୁମେ ଅବିନଶ୍ୱର, ତୁମ ପରାଜୟ ଅସମ୍ଭବ,*
*ମାଗୁଛି ତୁମକୁ ଥରେ ହେଲେ କୁହ 'ଉତିଷ୍ଠ ଆୟୁଷ୍ମାନ୍ ଭବ'।*





# ମ୍ୟାଡ଼ାମ୍ କ୍ୟୁରୀ ଓ ରେଡ଼ିୟମ୍

୧୮୬୭–୧୯୩୪ ମସିହା

ବିଜ୍ଞାନ, ସାହିତ୍ୟ, ଦର୍ଶନ, ଶାନ୍ତି, ଅର୍ଥନୀତି, ଚିକିତ୍ସା ଆଦି କ୍ଷେତ୍ରରେ ଜୀବନବ୍ୟାପୀ ସାଧନା କରି ଯେଉଁ ମହାମନିଷୀମାନେ ସମଗ୍ର ବିଶ୍ୱରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରନ୍ତି ସେମାନଙ୍କୁ ପ୍ରତିବର୍ଷ ନୋବେଲ୍

ପୁରସ୍କାର ମିଳିଥାଏ । ଏହି ସମ୍ମାନ ଯେଉଁମାନଙ୍କୁ ମିଳିଥାଏ ମାନବ ସମାଜର କଲ୍ୟାଣ ସାଧନ ପାଇଁ ଏମାନଙ୍କ ଦାନ ଅବର୍ଣ୍ଣନୀୟ ।

ଏହି ନୋବେଲ୍ ପୁରସ୍କାର ବିଜେତା ମାନଙ୍କ ମଧ୍ୟରେ ପୁଣି ଏମିତି ଯୋଗଜନ୍ମା ଅଛନ୍ତି ଯେଉଁ ମାନେ କି ଏହାକୁ ଏକାଧିକବାର ପାଇବାର ଗୌରବ ଅର୍ଜନ କରିଛନ୍ତି । ତେବେ ବର୍ତ୍ତମାନ ଯେଉଁ ଅତୁଳନୀୟ ବ୍ୟକ୍ତିତ୍ୱଙ୍କ ବିଷୟରେ ଆଲୋଚନା କରାଯାଉଛି ସେ ନୋବେଲ୍ ପୁରସ୍କାର ତ ଦୁଇଥର ବିଜୟିନୀ ହୋଇଛନ୍ତି, ତା' ଛଡ଼ା ତାଙ୍କ ପରିବାରରେ ତାଙ୍କ ସ୍ୱାମୀ, ଝିଅ ଓ ଜ୍ୱାଇଁ ପ୍ରତ୍ୟେକ ମଧ୍ୟ ଏହି ପୁରସ୍କାର ଜିଣି ନୋବେଲ୍ ପୁରସ୍କାର ଇତିହାସରେ ହୁଏତ ଅନନ୍ତ କାଳପାଇଁ ଏକ ରେକର୍ଡ଼ ସ୍ଥାପନ କରିଯାଇଛନ୍ତି । ସମୁଦାୟ ପାଞ୍ଚଥର ତାଙ୍କ ପରିବାରକୁ ଏ ସମ୍ମାନ ମିଳିଛି ।

ସେହି ସମ୍ମାନାସ୍ପଦ ଚିରସ୍ମରଣୀୟାଙ୍କ ନାମ ମ୍ୟାରୀ କ୍ୟୁରୀ । ତାଙ୍କ ପ୍ରଥମ ନାମ ଥିଲା ମ୍ୟାରୀ ସ୍କ୍ଲୋଦୋସ୍କା । ପେରୀ କ୍ୟୁରୀଙ୍କୁ ବିବାହ କରିବାପରେ ତାଙ୍କ ନାମ ମ୍ୟାରୀ କ୍ୟୁରୀ ହୋଇଥିଲା । ଜନସାଧାରଣରେ ସେ ମ୍ୟାଡ଼ାମ୍ କ୍ୟୁରୀ ନାମରେ ଅଭିହିତ ଥିଲେ ।

ସେ ଡାକ୍ତର ନଥିଲେ କିମ୍ବା ଚିକିତ୍ସା ବିଜ୍ଞାନରେ ସେ ନୋବେଲ୍ ପୁରସ୍କାର ବିଜୟିନୀ ହୋଇନଥିଲେ । କିନ୍ତୁ ତାଙ୍କ ଆବିଷ୍କାର ଫଳରେ କେବଳ ଚିକିତ୍ସା ବିଜ୍ଞାନ ବା ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ଜୀବ ବିଜ୍ଞାନ ନୁହେଁ ବରଂ ବିଜ୍ଞାନ ଜଗତର ପ୍ରତ୍ୟେକ ବିଭାଗ ଲାଭବାନ ଓ ଉପକୃତ ହୋଇଛି । ତାଙ୍କ ଦ୍ୱାରା ଆବିଷ୍କୃତ ରେଡ଼ିଅମ୍ ଓ ଅନ୍ୟାନ୍ୟ ବିକିରଣଯୁକ୍ତ ତେଜସ୍କ୍ରୀୟ ପଦାର୍ଥର ଗୁଣ ବିଗୁଣ ଯୋଗୁଁ ବିଜ୍ଞାନରେ ପ୍ରତ୍ୟେକଟି କ୍ଷେତ୍ର ପ୍ରଭାବିତ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ପୋଲାଣ୍ଡର ରାଜଧାନୀ ୱାରଶ' ଠାରେ ୧୮୬୭ ମସିହା ନଭେମ୍ବର ମାସ ୭ ତାରିଖ ଦିନ ସେ ଜନ୍ମ ଗ୍ରହଣ କରିଥିଲେ ଏକ ମଧ୍ୟବିତ୍ତ ପରିବାରରେ । ପିଲାଦିନୁ ସେ ଅତ୍ୟନ୍ତ ମେଧାବୀ ଓ କଷ୍ଟ ସହିଷ୍ଣୁ ଥିଲେ । ଅଳ୍ପ ବୟସରେ ସେ ମାଟ୍ରିକ୍ ପରୀକ୍ଷାରେ ସ୍ୱର୍ଣ୍ଣପଦକ ପାଇ ତାଙ୍କର ବିଚକ୍ଷଣ

ପ୍ରତିଭାର ପ୍ରଥମ ପ୍ରକାଶ ଦେଖାଇଥିଲେ । ତଥାପି ସେ ନାରୀ ହୋଇଥିବା ଯୋଗୁଁ ପୋଲାଣ୍ଡର ରକ୍ଷଣଶୀଳ ସମାଜ ତାଙ୍କୁ ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ପାଇଁ ଅନୁମତି ଦେଲାନାହିଁ । ତାଙ୍କ ପ୍ରାଣ ଭିତରେ ଜଳୁଥିଲା ଅଲିଭା ଜ୍ୟୋତି । ନୂଆ କିଛି କରିବାପାଇଁ ତାଙ୍କର ମନ ସର୍ବଦା ବ୍ୟାକୁଳ ହେଉଥିଲା । ଦୀର୍ଘ ୫ ବର୍ଷ କାଳ ସେଥିପାଇଁ ସେ ସଂଗ୍ରାମ କଲେ ସମାଜର ରକ୍ଷଣଶୀଳତା ବିରୁଦ୍ଧରେ । ତଥାପି ତାଙ୍କୁ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାର ସୁଯୋଗ ମିଳିଲା ନାହିଁ । ଶେଷରେ ସେ ବାଧ୍ୟ ହୋଇ ୧୮୯୧ ମସିହାରେ ପ୍ୟାରୀସ୍ ନଗରୀସ୍ଥ ସାର୍ବୋନ୍ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ । ସେଠାରେ ବି. ଏସ୍. ସି. ପରୀକ୍ଷାରେ ସେ ସମଗ୍ର ବିଶ୍ୱବିଦ୍ୟାଳୟରେ ପ୍ରଥମ ହେଲେ । ତାପରେ ୧୮୯୩ ମସିହାରେ ପଦାର୍ଥ ବିଜ୍ଞାନ ଓ ୧୮୯୪ ମସିହାରେ ଗଣିତ ଶାସ୍ତ୍ରରେ ଏମ୍. ଏସ୍. ସି. କରି ଉଭୟରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ନୂତନ୍ ରେକର୍ଡ଼ ସୃଷ୍ଟିକଲେ ।

ପରୀକ୍ଷାପରେ ମ୍ୟାରୀଙ୍କର ତାଙ୍କଠାରୁ ୮ ବର୍ଷ ବଡ଼ ପେରୀ କ୍ୟୁରୀଙ୍କ ସହିତ ପ୍ରଥମ ପରିଚୟ ହେଲା । ଧୀରେ ଧୀରେ ଉଭୟେ ପରସ୍ପରର ଗୁଣଗ୍ରାହୀ ହୋଇ ଶେଷରେ ୧୮୯୭ ମସିହାରେ ବିବାହ ସୂତ୍ରରେ ଆବଦ୍ଧ ହୋଇଥିଲେ । ପେରୀ କ୍ୟୁରୀ ମଧ୍ୟ ଜଣେ ପ୍ରତିଭାବାନ୍ ଯୁବ ବୈଜ୍ଞାନିକ ଥିଲେ । ସେ ପଦାର୍ଥ ବିଜ୍ଞାନରେ ସେହି ବିଶ୍ୱବିଦ୍ୟାଳୟରେ ଗବେଷଣା ରତ ଥିଲେ ।

ଆଣବିକ ପ୍ରକ୍ରିୟାର ଆବିଷ୍କର୍ତ୍ତା ପ୍ରଫେସର୍ କେବେରେଲ୍‌ଙ୍କ ପାଖରେ ରହି କ୍ୟୁରୀ ପ୍ରଥମେ ତାଙ୍କର ଗବେଷଣା ଆରମ୍ଭ କଲେ । ତାଙ୍କ ଭିତରେ ଲୁଚି ରହିଥିବା ପ୍ରଚଣ୍ଡ ପ୍ରତିଭା କେବଳ ସୁଯୋଗ ଓ ଅନୁକୂଳ ପରିସ୍ଥିତିର ଅପେକ୍ଷାରେ ଥାଏ । ଦିନେ ହଠାତ୍ ସେ ସମୟ ଓ ସୁଯୋଗ ତାଙ୍କ ହାତ ପାଖରେ ପହଞ୍ଚିଲା । ଏବଂ ସେହି ମୁହୂର୍ତ୍ତର ସେ ପୂର୍ଣ୍ଣ ସଦୁପଯୋଗ କଲେ ।

ତାଙ୍କ ପ୍ରଫେସର୍ ନିଜ ଗବେଷଣାଗାରରେ ଥିବା କୌଣସି ଏକ ସ୍ଥାନରେ କେତେଖଣ୍ଡ ୟୁରାନିୟମ ଛାଡ଼ି ଦେଇଥାନ୍ତି । ପରିତ୍ୟକ୍ତ ଅବସ୍ଥାରେ

ତାହା ପଡ଼ି ରହିଥାଏ । ଫଟୋ ଉଠାଇବା ପାଇଁ ଫଟୋପ୍ଲେଟ୍ କିଛି ଅଣାଯାଇଥିଲା । ସେହି ପ୍ଲେଟ୍ ଗୁଡ଼ିକ ଓଜନ୍ କରିବା ଆବଶ୍ୟକ ହେଲା । ତେଣୁ ମେରୀ ତାହା ଓଜନ୍ କଲାବେଳେ ସେହି ପରିତ୍ୟକ୍ତ ୟୁରାନିୟମ ଖଣ୍ଡଗୁଡ଼ିକ ପାସଙ୍ଗ ରୂପେ ବ୍ୟବହାର କରିଥିଲେ । ତା'ପରେ ଯେତେବେଳେ ଫର୍ଟୋ ଉଠାସରିଲା, ମେରୀ ଦେଖିଲେ ଯେ, ନେଗେଟିଭ୍ ଉପରେ କେତେକ ଅସ୍ୱାଭାବିକ ଗାର ପଡ଼ିଛି । ଫଟୋ ଉଠାଇବା ପାଇଁ ବ୍ୟବହୃତ କ୍ୟାମେରା ପରୀକ୍ଷା କରାଗଲା । ଯେଉଁ ଅନ୍ଧାର ଘରେ ଫଟୋ ଧୁଆଗଲା ତାହା ମଧ୍ୟ ମେରୀ ଭଲ କରି ଦେଖିନେଲେ । କୌଣସିଠାରେ ଆଲୋକ ପଶିବାର କିଛି ଆଶଙ୍କା ନାହିଁ । ତେଣୁ ମେରୀ ଆଶଙ୍କା କଲେ ଯେ, ଯେଉଁ ଆଲୋକ ଫଟୋ ପ୍ଲେଟ୍ ଉପରେ ଏପରି ଗାର ସବୁ ସୃଷ୍ଟି କରିଛି ତାହା ହୁଏତ ସେହି ୟୁରାନିୟମ ଖଣ୍ଡରୁ ଆସିଥାଇପାରେ ।

ୟୁରାନିୟମ୍‌ର ଏହି ନିଗୂଢ଼ ଶକ୍ତି ତାଙ୍କ ମନଭିତରେ ଅସୁମାରୀ ପ୍ରଶ୍ନର ଢେଉ ରୂପେ ନିରନ୍ତର ଦେଖାଗଲା । ଫଳରେ ସେ ଦୁନିଆକୁ ଭୁଲିଗଲେ । ଭୁଲିଗଲେ ନିଜର ଖାଦ୍ୟପେୟ, ସ୍ୱାଚ୍ଛନ୍ଦ୍ୟ । ଅହରହ କେବଳ ଗୋଟିଏ ଚିନ୍ତା । କିପରି ସେ ଏହି ଆଲୋକର ସନ୍ଧାନ ପାଇବେ । କିପରି ଦୁନିଆକୁ ଜଣାଇବେ ଏହାର ପରାକାଷ୍ଠା ।

ଶେଷରେ ସେ ତାଙ୍କ ପ୍ରଫେସରଙ୍କ ଗବେଷଣାଗାରରୁ ଇସ୍ତଫା ଦେଇ ସ୍ୱାମୀଙ୍କ ସହିତ ଚାଲି ଆସିଲେ । ଅନେକ କଷ୍ଟରେ ନିଜର ଏକ ପରୀକ୍ଷାଗାର ତିଆରିକଲେ । ଭଙ୍ଗା ରୁଜା ଟିଣ ଛପର ଘରଟିଏ । ତା'ରି ଭିତରେ ଶୀତ ବର୍ଷାକୁ ନମାନି ସ୍ୱାମୀ ସ୍ତ୍ରୀ ଉଭୟେ ଅଭାବ ଅନାଟନକୁ ବେଖାତିର କରି ନିଜ ଗବେଷଣାରେ ହିଁ ମନୋନିବେଶ କଲେ ।

ୟୁରୋପ ମହାଦେଶରେ ଏକ ଛୋଟ ଦେଶ ବୋହେମିଆ । କ୍ୟୁରୀ ଦମ୍ପତି ଭୂଗୋଳ ଅଧ୍ୟୟନ କରି ଜାଣିବାକୁ ପାଇଲେ ଯେ, ଏହି ଦେଶଟି ସାନ ହେଲେ ମଧ୍ୟ ତାଙ୍କ ଗବେଷଣା ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହାର ପଥର ମାନଙ୍କର ଅନେକ ସ୍ଥାନରେ ୟୁରାନିୟମ ପୂରିରହିଛି । ତେଣୁ କ୍ୟୁରୀ ଦମ୍ପତି ବୋହେମିଆଁ ସରକାରଙ୍କୁ ଅନୁରୋଧ କଲେ ସେମାନଙ୍କୁ ଯଥେଷ୍ଟ ପରିମାଣର

ୟୁରାନିୟମ ଯୁକ୍ତ ଧାତୁପଥର (ପିଚ୍ ବ୍ଲେଣ୍ଡ) ଦାନସୂତ୍ରରେ ଦେବାପାଇଁ। ସେତେବେଳକୁ ୟୁରାନିୟମ ବ୍ୟବହାର ଓ ମୂଲ୍ୟ ବିଷୟ ପ୍ରତି ବିଶ୍ୱରେ ବିଶେଷ ସଚେତନତା ନଥିଲା। ତେଣୁ ଅକ୍ଲେଶରେ ତାଙ୍କର ଅନୁରୋଧ ଗୃହୀତ ହେଲା।

କ୍ୟୁରୀ ତାଙ୍କର ପରୀକ୍ଷା ପାଇଁ ଉପଯୁକ୍ତ ପରିମାଣର ୟୁରାନିୟମ ବହୁଳ ଧାତୁ ପଥର ପାଇଗଲେ। ଏହାକୁ ପିଚ୍‌ବ୍ଲେଣ୍ଡ କୁହଯାଏ। ଏଥିରୁ ରୌପ୍ୟ ଧାତୁ ମଧ୍ୟ ମିଳିଥାଏ।

ଦିନ ଦିନ ମାସ ମାସ ପରିଶ୍ରମ ଗ୍ଲିଲା। ଉଭୟଙ୍କ ସ୍ୱାସ୍ଥ୍ୟରେ ଧୀରେ ଧୀରେ ଅବନତି ଦେଖାଦେଲା। ହଠାତ୍ ଏକ ରାତିରେ ସେମାନେ ତାଙ୍କର ପରୀକ୍ଷାଗାର ଖୋଲି ଦେଖିଲେଯେ, କେତେକ ପରୀକ୍ଷା ସାରି କିଛି ୟୁରାନିୟମଯୁକ୍ତ ଧାତୁପଥର ରଖିଥିବା ଏକ ଟେଷ୍ଟ ଟ୍ୟୁବ୍ ଭିତରୁ ଏକ ଅଦ୍ଭୁତ ନୀଳରଙ୍ଗର ଆଲୋକ ଦେଖା ଦେଉଛି। ପରୀକ୍ଷାଗାର ଭିତରେ ଅନ୍ଧାର ହୋଇଥିଲା। ସେ ଆଲୋକ ଜଳାଇଲା ପରେ ସେହି ନୀଳରଙ୍ଗର ଆଲୋକ ଅଦୃଶ୍ୟ ହୋଇଗଲା। ଏତେଦିନର ସାଧନାପରେ ସ୍ୱପ୍ନ ତାଙ୍କର ସାର୍ଥକ ହୋଇଛି ଦେଖି କ୍ୟୁରୀ ଦମ୍ପତି ଆନନ୍ଦରେ ବିଭୋର ହୋଇଗଲେ। ଏହି ସଫଳତାପରେ ଯେଉଁ ବସ୍ତୁ ସେ ପାଇଲେ ତା'ର ନାମ ଦେଲେ "ରେଡ଼ିୟମ"। ଏହି ରେଡ଼ିଅମ୍‌ର ଆବଶ୍ୟକତା ଓ ଉପକାରିତା ଆଧୁନିକ ବିଜ୍ଞାନ ଜଗତରେ ଅଧିକରୁ ଅଧିକ ହେବାକୁ ଲାଗଛି। ଏହି ଉଦ୍ଭାବନ ପାଇଁ କ୍ୟୁରୀ ଦମ୍ପତି ୧୯୦୩ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ବିଜୟୀ ହେଲେ।

୧୯୧୧ ମସିହାରେ ପୋଲୋନିଅମ୍ ନାମକ ମୌଳିକ ବସ୍ତୁର ପ୍ରସ୍ତୁତି, ଅପରିଷ୍କୃତ ଧାତୁ ପ୍ରସ୍ତରରୁ ଏହାର ଉଦ୍ଧାର ତଥା ଏହାର ରାସାୟନିକ ପ୍ରକୃତି ନିର୍ଦ୍ଧାରଣ ତଥା ରେଡ଼ିଅମ୍‌ର ରାସାୟନିକ ପ୍ରକୃତି ନିର୍ଦ୍ଧାରଣ ଇତ୍ୟାଦି ଉଲ୍ଲେଖନୀୟ ମୌଳିକ ଗବେଷଣା ପାଇଁ ମ୍ୟାଡ଼ମ୍ କ୍ୟୁରୀଙ୍କୁ ପୁନଶ୍ଚ ନୋବେଲ୍ ପୁରସ୍କାର ରସାୟନ ବିଜ୍ଞାନରେ ମିଳିଥିଲା।

ମ୍ୟାଡ଼ାମ୍ କ୍ୟୁରୀଙ୍କର ଏକମାତ୍ର କନ୍ୟା ଆଲିନ୍ କ୍ୟୁରୀ । ସେ ମଧ୍ୟ ମା'ଙ୍କ ପରି ଜଣେ ପ୍ରଗାଢ଼ ବିଜ୍ଞାନ ପ୍ରେମୀ । ତାଙ୍କର ବିବାହ ଫ୍ରେଡରିକ୍ ଜୁଲିଅଟ୍‌ଙ୍କ ସହିତ ହେବାପରେ ସେହି ଦମ୍ପତି ଗବେଷଣାରେ ମଜ୍ଜିଗଲେ । ରେଡ଼ିଅମ୍ ଓ ୟୁରାନିଅମ୍ ଆଦି ପଦାର୍ଥର ଦୁର୍ଲଭତା ଦେଖି ତେଜସ୍କ୍ରୀୟତା ବିଶିଷ୍ଟ ଅନ୍ୟ ପଦାର୍ଥମାନ କିପରି କୃତ୍ରିମ ଉପାୟରେ ସୃଷ୍ଟି କରାଯାଇପାରିବ ତାହା ସେମାନେ ଚେଷ୍ଟା କଲେ । ଯେତେବେଳେ ସେମାନେ ତାଙ୍କ ପରୀକ୍ଷାରେ ସଫଳହୋଇ କୃତ୍ରିମ ବିକୀରଣଧର୍ମୀ ପଦାର୍ଥମାନ ରାସାୟନିକ ପ୍ରକ୍ରିୟା ମାଧ୍ୟମରେ ସୃଷ୍ଟି କଲେ, ସେମାନଙ୍କୁ ମଧ୍ୟ ନୋବେଲ ପୁରସ୍କାର ମିଳିଲା । ରସାୟନ ବିଜ୍ଞାନରେ ୧୯୩୫ ମସିହାରେ ସେମାନେ ଏହି ପୁରସ୍କାର ପାଇବା ଫଳରେ ମାତ୍ର ୩୨ ବର୍ଷର ସମୟ ସୀମା ମଧ୍ୟରେ କ୍ୟୁରୀ ପରିବାରରେ ପାଞ୍ଚଗୋଟି ନୋବେଲ ପୁରସ୍କାର ଏକତ୍ରିତ ହୋଇପାରିଲା ।

କେବଳ ସେତିକିନୁହେଁ, ବିଜ୍ଞାନ ଜଗତକୁ ତାଙ୍କର ଅବିସ୍ମରଣୀୟ ଅବଦାନ ଫଳରେ ତାଙ୍କର ମୃତ୍ୟୁପରେ ଆବିଷ୍କୃତ ଏକ ମୌଳିକ ବସ୍ତୁର ନାମ ତାଙ୍କ ନାମାନୁସାରେ କ୍ୟୁରିୟମ୍ ରଖାଯାଇଛି । ତେଜସ୍କ୍ରୀୟତାର ଏକ ଏକକ ତାଙ୍କ ନାମାନୁସାରେ ହୋଇଛି 'କ୍ୟୁରୀ' ।

ମ୍ୟାଡ଼ାମ୍ କ୍ୟୁରୀ କେବଳ ବିଦୁଷୀ ଥିଲେ ତାହା ନୁହେଁ, ନାରୀର ପ୍ରତ୍ୟେକଟି ସୁଗୁଣ ତାଙ୍କଠାରେ ବିଦ୍ୟମାନ ଥିଲା । ନିଜ ଗବେଷଣାରେ ନିମଗ୍ନ ଥିଲେ ମଧ୍ୟ ସ୍ୱାମୀଙ୍କର ଯତ୍ନନେବାରେ ସେ କେବେ ହେଳା କରିନାହାନ୍ତି । ନିଜର କନ୍ୟା ଆଲିନ୍‌ର ଲାଳନ ପାଳନ ତଥା ଶିକ୍ଷା ଦୀକ୍ଷାର ସମସ୍ତ ଦାୟିତ୍ୱ ସେ ଖୁବ୍ ଆଗ୍ରହର ସହିତ କରିଛନ୍ତି । ତାଙ୍କରି ସୁନିପୁଣ ହାତର ସ୍ପର୍ଶ ଯୋଗୁଁ ହିଁ ଆଲିନ୍‌ର ମଧ୍ୟ ଦିନେ ନୋବେଲ୍ ପୁରସ୍କାର ବିଜୟୀନୀ ହୋଇପାରିଥିଲେ । ଏହା ବ୍ୟତୀତ ପ୍ରଥମ ବିଶ୍ୱଯୁଦ୍ଧର ଆହତ ସୈନିକ ମାନଙ୍କ କଲ୍ୟାଣ ପାଇଁ ମ୍ୟାଡ଼ାମ୍ କ୍ୟୁରୀ ତାଙ୍କର ଅର୍ଥ ଓ ଶାରୀରିକ ଶ୍ରମଦାନ କରି ତାଙ୍କ କଲ୍ୟାଣ ଧର୍ମୀ ବ୍ୟକ୍ତିତ୍ୱର ପ୍ରକୃତ ପରିଚୟ ଦେଇଯାଇଛନ୍ତି । ତାଙ୍କର ଏହି ମହନୀୟତା ପାଇଁ ଆମେରିକା ସରକାର ତାଙ୍କୁ ଅନେକ ଉପାଧିରେ ବିଭୂଷିତା କରିଥିଲେ ।

ଜନ୍ମ ଥିଲେ ମୃତ୍ୟୁ ଅନିବାର୍ଯ୍ୟ। ଏମିତି ଦିନେ ସେଇ ଅନିବାର୍ଯ୍ୟ ଦିନ କ୍ୟୁରୀଙ୍କ ଜୀବନରେ ଦେଖାଦେଲା। ଜୀବନ ସାରା ତେଜସ୍କ୍ରିୟ ପଦାର୍ଥ ମାନଙ୍କର ରହସ୍ୟ ଜାଣିବାକୁ ଚେଷ୍ଟାକରି ସେ ପଦାର୍ଥ ମାନଙ୍କ ବିଷୟରେ ଅନେକ ପୁସ୍ତକ ରଚନା କରିଛନ୍ତି। ପ୍ୟାରୀସ୍‌ଠାରେ ସେ ନିଜସ୍ୱ ବ୍ୟୟରେ କ୍ୟୁରୀ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ରେଡ଼ିଅମ୍ ନାମକ ଏକ ଶିକ୍ଷା ତଥା ଗବେଷଣା ପ୍ରତିଷ୍ଠାନ ଗଢ଼ିଛନ୍ତି। କିନ୍ତୁ ଶେଷରେ ସେହି ତେଜସ୍କ୍ରିୟ ପଦାର୍ଥ ମାନଙ୍କର ସଂସ୍ପର୍ଶରେ କ୍ରମାଗତ ଅନେକ ବର୍ଷ କଟାଇବା ଫଳରେ ଶରୀର ଉପରେ ତା' ର କୁପ୍ରଭାବ ପଡ଼ିଲା। ତାଙ୍କୁ ଲ୍ୟୁକିମିଆ ବା ରକ୍ତ କର୍କଟ ରୋଗ ଗ୍ରାସ କଲା। ୧୯୩୪ ମସିହା ଜୁଲାଇ ମାସ ୪ ତାରିଖ ଦିନ ଫ୍ରାନ୍‌ସ ଠାରେ ତାଙ୍କର ଦେହାବସାନ ହେଲା। ଜୀବନକାଳ ମଧ୍ୟରେ ତାଙ୍କ ଗବେଷଣା ସହିତ ସେ ଏପରି ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲେ ଯେ, ତାଙ୍କ ମୃତ୍ୟୁବେଳେ ମଧ୍ୟ ମନେହେଲା ଯେପରି ଶିକ୍ଷାଦେବାପାଇଁ କହୁଛନ୍ତି "ନାଁ, ଏ ମୋ'ର ମୃତ୍ୟୁ ନୁହେଁ। ମୁଁ ମୋ ଅନୁଷ୍ଠାନ ଭିତରେ ବଂଚି ରହିଛି। ଆସ-ଅନେକ କଥା ଅଛି କହିବାକୁ, ଶିକ୍ଷାଦେବାକୁ ..."





# ସାର୍ ଆଲେକ୍‌ଜାଣ୍ଡାର ଫ୍ଲେମିଙ୍ଗ ଓ ପେନ୍‌ସିଲିନ୍

୧୮୮୧-୧୯୫୫ ମସିହା

ପେନ୍‌ସିଲିନ୍ ପ୍ରାୟ ସମସ୍ତଙ୍କର ଜଣାଶୁଣା। ପ୍ରତିଜୀବୀ ଜଗତର ଏହା ସର୍ବ ପୁରାତନ ଉଦ୍ଭାବନ। ଏହାପରେ ଅନେକ ପ୍ରତିଜୀବୀର ଉଦ୍ଭାବନ ହୋଇଛି। ତଥାପି ନିମୋନିଆ, ଡିଫ୍‌ଥେରିଆ, ଯୌନରୋଗ ଇତ୍ୟାଦି କେତେକ

ଭୟାନକ ରୋଗପାଇଁ ଏହା ବର୍ତ୍ତମାନ ପର୍ଯ୍ୟନ୍ତ ସର୍ବଶ୍ରେଷ୍ଠ ଔଷଧ ରୂପେ ଆଦୃତ ହେଉଛି। ସାଧାରଣ ଘା' ଘଉଡ଼ ଠାରୁ ଆରମ୍ଭ କରି ଅନେକ କଷ୍ଟସାଧ୍ୟ ରୋଗରେ ଏହି ଔଷଧର ପ୍ରଭାବ ଅବ୍ୟର୍ଥ। ମାତ୍ରା ଅନୁଯାୟୀ ଏହା ରୋଗ ଜୀବାଣୁର ବଂଶବୃଦ୍ଧି ପ୍ରତିରୋଧ କରେ କିମ୍ବା ଜୀବାଣୁକୁ ସମୂଳେ ଧ୍ୱଂସ କରେ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ରୋଗ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ବିଜ୍ଞାନ ଜଗତ ପ୍ରସ୍ତୁତ ହେଲାବେଳେ ପେନ୍‌ସିଲିନ୍ ଏକ ଅମୋଘ ଅସ୍ତ୍ର ରୂପେ ଆବିର୍ଭୂତ ହେଲା କହିଲେ ଅତ୍ୟୁକ୍ତି ହେବନାହିଁ। ଏହି ଔଷଧର ଉଦ୍ଭାବନ ଓ ଉଦ୍ଭାବକଙ୍କ କାହାଣୀ ଖୁବ୍ କୌତୁହଳ ପୂର୍ଣ୍ଣ। ୧୯୨୦ ମସିହାରେ ସାର ଆଲେକ୍‌ଜାଣ୍ଡର ଫ୍ଲେମିଙ୍ଗ ନାମକ ଜଣେ ଜୀବାଣୁ ତତ୍ତ୍ୱଜ୍ଞ ପ୍ରଥମେ ଏହାର ଉଦ୍ଭାବନ କରିଥିଲେ ହେଁ ଚିକିତ୍ସା ଜଗତକୁ ଏହା ପ୍ରବେଶ କଲା ୨୧ ବର୍ଷ ପରେ; ୧୯୪୧ ମସିହାରେ। ଫ୍ଲୋରୀ ଓ ଚେନ୍ ନାମକ ଦୁଇଜଣ ବୈଜ୍ଞାନିକଙ୍କର ପ୍ରେରଣାରେ ଏହି ଉଦ୍ଭାବନ ଉପରେ ଆଉ ଅନେକ ପରୀକ୍ଷା ନିରୀକ୍ଷା ହୋଇ ଶେଷରେ ଏହା ଜନ ସମାଜର ବ୍ୟବହାର ପାଇଁ ବଜାରକୁ ଆସିଲା। ସେଥିପାଇଁ ଏହାର ଉଦ୍ଭାବନ ପାଇଁ ୧୯୪୫ ମସିହାରେ ନୋବେଲ ପୁରସ୍କାର ଫ୍ଲେମିଙ୍ଗ, ଫ୍ଲୋରୀ ଓ ଚେନ୍ ତିନିଜଣଙ୍କୁ ସଂଯୁକ୍ତ ଭାବେ ପ୍ରଦତ୍ତ ହେଲା।

୧୮୮୧ ମସିହା ଅଗଷ୍ଟ ମାସ ୬ ତାରିଖରେ ସ୍କଟ୍‌ଲ୍ୟାଣ୍ଡର ଲକ୍‌ଫିଲ୍‌ଡ଼ରେ ଫ୍ଲେମିଙ୍ଗ ଜନ୍ମ ଗ୍ରହଣ କରିଥିଲେ। ପିଲାଦିନୁ ସେ ଖୁବ୍ ମେଧାବୀ ଏବଂ ଅନୁସନ୍ଧିତ୍ସୁ ପ୍ରକୃତିର ଥିଲେ। ଲଣ୍ଡନ୍‌ର ସେଣ୍ଟ୍ ମେରୀ ମେଡିକାଲ୍ ସ୍କୁଲରୁ ୧୯୦୬ ମସିହାରେ ଜୀବାଣୁ ତତ୍ତ୍ୱଜ୍ଞ ଭାବେ ଉପାଧିପାଇ ସେ ପ୍ରଥମେ ସେହି ଅନୁଷ୍ଠାନରେ ତାଙ୍କର ଗବେଷଣା ଆରମ୍ଭ କଲେ। ରୋଗ ଜୀବାଣୁକୁ କିପରି ଆୟତ୍ତ କରାଯାଇପାରିବ ତାହା ତାଙ୍କର ଏକମାତ୍ର ଚିନ୍ତାଥିଲା। ତାଙ୍କ ପରୀକ୍ଷାଗାର ଭିତରେ ସେ ଖିଆପିଆ ଭୁଲି ଦୀର୍ଘ ସମୟ ଗବେଷଣାରେ ମଗ୍ନ ରହୁଥିଲେ। ପ୍ରଥମ ବିଶ୍ୱଯୁଦ୍ଧ ବେଳେ ସେ ବ୍ରିଟିଶ ସୈନ୍ୟବାହିନୀର ଡାକ୍ତର ଭାବେ ନିଯୁକ୍ତ ହୋଇଥିଲେ। କିନ୍ତୁ ଯୁଦ୍ଧ ସରିବା

ପରେ ପରେ ସେ ପୁଣି ଥରେ ଫେରିଆସି ନିଜ ଶିକ୍ଷାନୁଷ୍ଠାନର ଗବେଷଣାରେ ମନୋନିବେଶ କଲେ ।

ତାଙ୍କ ଗବେଷଣାଗାର ଟେବୁଲ୍ ଉପରେ ଅନେକ ଥାଳିଆରେ ଜୀବାଣୁଯୁକ୍ତ ପଦାର୍ଥମାନ ପରୀକ୍ଷା ପାଇଁ ରଖାଯାଇଥାଏ । ଗବେଷଣାରେ ଅଧିକାଂଶ ସମୟ କଟୁଥିବା ଯୋଗେ ସେ ନିଜ ବାସଗୃହକୁ ପ୍ରାୟତଃ ଆସିପାରନ୍ତି ନାହିଁ । ଦିନେ ତାଙ୍କ ଅଇଁଠା ଥାଳୀ ଭୁଲ୍ ବଶତଃ ଟେବୁଲ୍ ଉପରେ ଛାଡ଼ି ଦେଇଥାଆନ୍ତି । ଅନ୍ୟତ୍ର କାମ ପଡ଼ିବାରୁ ଅଳ୍ପଦିନ ପାଇଁ ତାଙ୍କ ଗବେଷଣାଗାର ବନ୍ଦ ରହିଲା । ପରେ ଯେତେବେଳେ ସେ ଗ୍ୱବି ଖୋଲିଲେ ଦେଖିଲେ ସେ ତାଙ୍କ ଅଇଁଠ ଥାଳୀରେ ଫିମ୍ପି ଜାତୀୟ ଏକ କବକ*ର ବୃଦ୍ଧି

---

* କବକ କଣ ?

ବର୍ଷାଦିନେ ପାଉଁରୁଟୀ, ଆଚ୍ଚାର, ଜେଲି ଓ ଚମଡ଼ା ଆଦିରେ ତନ୍ତୁଜାତୀୟ କେତେକ ପଦାର୍ଥ ଜନ୍ମିଥିବାର ଦେଖିବାକୁ ମିଳେ । ଏହା ଏକ ପ୍ରକାର ସରଳ ପରାଙ୍ଗ୍‌ପୁଷ୍ଟ ଉଦ୍ଭିଦ । ଏହାର ନାମ କବକ ।

ଅନ୍ୟ ଉଦ୍ଭିଦ ମାନଙ୍କ ପରି ଏହାର ମୂଳ, ଗଣ୍ଡି, ପତ୍ର, ଫୁଲ, ଫଳ ଆଦି ନଥାଏ । ଏମାନେ ନିଜର ଖାଦ୍ୟ ପ୍ରସ୍ତୁତ କରିପାରନ୍ତି ନାହିଁ । ଖାଦ୍ୟ ପାଇଁ ଅନ୍ୟ ପଦାର୍ଥ ଉପରେ ନିର୍ଭର କରିବାକୁ ପଡ଼ିଥାଏ । କବକ ଗୁଡ଼ିକର ତଳଭାଗ ସରୁହୋଇ ମୂଳପରି କାମକରେ ଏବଂ ଯେଉଁ ପଦାର୍ଥ ଉପରେ ଏହା ବଢ଼େ ସେହି ପଦାର୍ଥରୁ ଖାଦ୍ୟ ସଂଗ୍ରହ କରେ । ଏହାର ଉପରଭାଗ ଗୋଲାକାର ହୋଇଥାଏ । ଏଥିରେ ଥିବା ସମାବୃତ୍ତ ସୂକ୍ଷ୍ମବୀଜ (ସ୍ପୋର) ଯୋଗେ ଏହା ବଂଶ ବିସ୍ତାର କରେ । ସୂକ୍ଷ୍ମବୀଜ ଗୁଡ଼ିକ ଅଣୁ ପରିମାଣ ହୋଇ ଥିବାରୁ ତାହା ବାୟୁ ମଣ୍ଡଳରେ ଉଡ଼ି ଏଣେ ତେଣେ ପଡ଼େ । ସେଥିରୁ ନୂତନ କବକ ସୃଷ୍ଟି ହୁଏ ।

ବିଭିନ୍ନ ପ୍ରକାରର କବକ ମାନଙ୍କ ମଧ୍ୟରୁ ପେନ୍‌ସିଲିୟମ୍ ଗୋଟିଏ । ଏହା ବ୍ୟତୀତ କେତେକ ବଡ଼ ଧରଣର କବକ ମଧ୍ୟ ଅଛି । ଆମେ ଖାଉଥିବା ଛତୁ ମଧ୍ୟ ଗୋଟିଏ କବକ ।

ହୋଇଛି ଏବଂ ତାଙ୍କ ପରୀକ୍ଷାଗାର ଥାଳିଆରେ ଥିବା ଅନେକ ଜୀବାଣୁ ମରିଯାଇଛନ୍ତି । ଏହା ଦେଖି ତାଙ୍କ ମନରେ ପ୍ରଥମେ ବିସ୍ମୟ ଜାତ ହେଲା । ସେ ଭାବିଲେ ଯେ, ବୋଧହୁଏ ଏହି କବକର ଜୀବାଣୁ ପ୍ରତିରୋଧକ ଶକ୍ତି ରହିଛି । ଏହି ସଂମ୍ଭାବନାକୁ ମୂଳମନ୍ତ୍ରକରି ସେ ତାଙ୍କର ପରୀକ୍ଷାକୁ ନୂଆରୂପ ଦେଲେ ।

ଅଇଁଠା ଥାଳୀରୁ କିଛି କବକ ଆଣି ସେ ଅନ୍ୟାନ୍ୟ ଥାଳିଆ ଗୁଡ଼ିକରେ ପ୍ରୟୋଗ କଲେ । ଏଥର ମଧ୍ୟ ସେଇଆ ହେଲା । ପ୍ରତ୍ୟେକ ଥାଳିଆରୁ ଜୀବାଣୁଗୁଡ଼ିକ ନଷ୍ଟ ହେବାକୁ ଲାଗିଲେ । ଆନନ୍ଦରେ ନାଚି ଉଠିଲେ ଫ୍ଲେମିଙ୍ଗ । ତାଙ୍କର ସ୍ୱପ୍ନ ସାର୍ଥକ ହୋଇଛି ଜାଣି ତାଙ୍କ ପରୀକ୍ଷାର କିପରି ବିକାଶ ହେବ ତାହା ଚିନ୍ତା କଲେ ।

ଯେଉଁ କବକର ଏହି ଜୀବାଣୁ ନାଶକ କ୍ଷମତା ଫ୍ଲେମିଙ୍ଗଙ୍କୁ ଆଲୋକ ଦେଖାଇଲା ତାହାର ନାମ "ପେନ୍‌ସିଲିୟମ୍" । ପରବର୍ତ୍ତୀ କାଳରେ ସେଥିରୁ ଔଷଧଟି ବାହାରିଥିବାରୁ ତାକୁ ପେନ୍‌ସିଲିନ୍ କୁହାଗଲା ।

ଏହି ପେନ୍‌ସିଲିଅମ୍ କବକ ଟି ଖୁବ୍ ଦୁଷ୍ପ୍ରାପ୍ୟ। ଅନେକ କଷ୍ଟ ସ୍ୱୀକାର କରି ସେ ପ୍ରଥମେ ନିଜ ପରୀକ୍ଷାଗାରରେ ଏହାର ବୃଦ୍ଧି ଘଟାଇଲେ । ଏଥିରୁ ରସ ବାହାର କରି ବିଭିନ୍ନ ରୋଗ ଜୀବାଣୁ ଉପରେ ପ୍ରୟୋଗ କଲେ । ପରୀକ୍ଷା ପରେ ଜଣାଗଲା ଯେ, ଅନେକ ଜୀବାଣୁ ଉପରେ ଏହାର ପ୍ରଭାବ ବେଶ୍ ଉତ୍କଟ । ଏପରିକି ଏହି ରସର ଲଘୁ ପ୍ରୟୋଗରେ ମଧ୍ୟ ଜୀବାଣୁର ବଂଶବୃଦ୍ଧି ବ୍ୟାହତ ହେଉଛି । ଏଥିରୁ ସେ ଏହି ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ଜୀବାଣୁର ସମ୍ପୂର୍ଣ୍ଣ ବିନାଶ ଅଥବା ବଂଶବୃଦ୍ଧି ପ୍ରତିହତ କରିବାରେ ପେନ୍‌ସିଲିୟମର ଭୂମିକା ଅବଶ୍ୟ ସ୍ୱୀକାର୍ଯ୍ୟ ଓ ଅଭିନନ୍ଦନୀୟ।

କିନ୍ତୁ ପେନ୍‌ସିଲିନ୍‌ର ଏକ ଅଦ୍ଭୁତ ଚରିତ୍ର ତାଙ୍କ ଆନନ୍ଦ କୁଆରରେ ହଠାତ୍ ଭଙ୍ଗା ଆଣିଦେଲା । କ୍ରମେ ସେ ଜାଣିପାରିଲେ ଯେ, ପରୀକ୍ଷା ସମୟରେ ପେନ୍‌ସିଲିନ୍ ହଠାତ୍ ତା'ର ଚରିତ୍ର ପରିବର୍ତ୍ତନ କରି ଅନ୍ୟ ଏକ ଅନାବଶ୍ୟକ ପଦାର୍ଥରେ ପରିଣତ ହୋଇଯାଉଛି । ଫଳରେ ତା'ର ଜୀବାଣୁନାଶକ ଶକ୍ତି ସ୍ଥାୟୀ ହେଉନାହିଁ । ରସାୟନ ତତ୍ତ୍ୱ ଉପରେ ତାଙ୍କର ବିଶେଷ ଜ୍ଞାନ ନଥିଲା ।

ତେଣୁ ସହଯୋଗ ପାଇଁ ସେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଗ୍ଲଲିଲେ। ସେଠାରେ ହାୱାର୍ଡ଼ ଫ୍ଲୋରୀ ଓ ଅର୍ନେଷ୍ଟ ଚେନ୍ ନାମକ ବୈଜ୍ଞାନିକ ଦ୍ୱୟଙ୍କ ସହାୟତାରେ ସେ ପେନ୍‌ସିଲିନ୍‌କୁ ଫ୍ରିଜ ଡ୍ରାଇଙ୍ଗ ବା ଘନୀଭୂତ ଶୁଷ୍କୀ କରଣ ପଦ୍ଧତିରେ ସ୍ଥିରୀକୃତ କରିପାରିଲେ। କେବଳ ସେତିକି ନୁହେଁ ଫ୍ଲୋରୀ ଓ ଚେନ୍‌ଙ୍କ ପ୍ରଚେଷ୍ଟା ଯୋଗୁଁ ପେନ୍‌ସିଲିନ୍‌ର ଅନ୍ୟ ଅନେକ ଦିଗରେ କ୍ରମବିକାଶ ସମ୍ଭବ ହେଲା।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ହଜାର ହଜାର ଲୋକ ଯୁଦ୍ଧରେ କ୍ଷତ ବିକ୍ଷତ ହେଲେ। କିନ୍ତୁ ସେ ପର୍ଯ୍ୟନ୍ତ ପେନ୍‌ସିଲିନ୍ ବ୍ୟବସାୟିକ ଭିତ୍ତିରେ ତିଆରି ବ୍ୟବସ୍ଥା ହୋଇପାରିନଥିଲା। ପ୍ରଥମ କରି ୧୯୪୧ ଜୁନ୍ ମାସରେ ମାତ୍ର ୬ ଜଣ ସୈନିକଙ୍କ ଠାରେ ଏହା ପରୀକ୍ଷାମୂଳକ ଭାବେ ପ୍ରୟୋଗ କରାଗଲା। କିନ୍ତୁ ଉପଯୁକ୍ତ ପରିମାଣର ଔଷଧ ଅଭାବରୁ ତହିଁ ମଧ୍ୟରୁ ଦୁଇଜଣ ସୈନିକ ପ୍ରାଣ ହରାଇଥିଲେ।

ତା'ପରେ ୧୯୪୧ ମସିହା ଶେଷଆଡ଼କୁ ଫ୍ଲେମିଙ୍ଗ ଆମେରିକା ଯାଇ ବୈଜ୍ଞାନିକ ଓ ଔଷଧ ଉତ୍ପାଦକ ସଂସ୍ଥା ମାନଙ୍କ ସହିତ ଆଲୋଚନା କଲେ। ସମସ୍ତେ ଏକ୍‌ଜୁଟ୍ ହୋଇ ତାଙ୍କୁ ସାହାଯ୍ୟ କଲେ। ଅନେକ ପରୀକ୍ଷା ପରେ ପେନ୍‌ସିଲିନ୍ କିପରି ବ୍ୟବସାୟିକ ଭିତ୍ତିରେ ଉତ୍ପାଦିତ ହୋଇପାରିବ ତା'ର ଉପାୟ ବାହାରିଲା। ଅଳ୍ପଦିନ ଭିତରେ ଏହାର ଉତ୍ପାଦନ, ବିତରଣ ଓ ବ୍ୟବହାର ବିଶ୍ୱବ୍ୟାପୀ ଚହଳ ସୃଷ୍ଟିକଲା। ବିଶ୍ୱ ଯୁଦ୍ଧରେ ଆଧୁନିକ ବିଶଲ୍ୟ କରଣୀ ଭାବେ ପେନ୍‌ସିଲିନ୍ କାମ କଲା। ଅଗଣିତ ସୈନ୍ୟଙ୍କର ଜୀବାଣୁ ଦୂଷିତ କ୍ଷତ ତଥା ଅନେକ ଭୟାନକ ରୋଗ ଏହି ଔଷଧ ଯୋଗେ ଉପଶମ ହେଲା।

ଫ୍ଲେମିଙ୍ଗଙ୍କର ଉତ୍ସର୍ଗୀକୃତ ଜୀବନ, ନିରବଚ୍ଛିନ୍ନ ସାଧନା ଫଳରେ ପେନ୍‌ସିଲିନ୍‌ର ଉଦ୍ଭାବନ ହେଲା। ପରବର୍ତ୍ତୀ ଦଶନ୍ଧି ମାନଙ୍କରେ ଅନେକ ପ୍ରତିଜୀବୀର ଉଦ୍ଭାବନ ହେଲାଣି। ୨୦୦୦ ମସିହା ବେଳକୁ ପ୍ରତିଜୀବୀର ସଂଖ୍ୟା ହୁଏତ କେତେ ଶହ ହୋଇଥିବେ କହିହେବ ନାହିଁ। କିନ୍ତୁ ଅଦ୍ୟାବଧି

ଫ୍ଲେମିଙ୍ଗଙ୍କ ଉଦ୍ଭାବନକୁ ପ୍ରତିଜୀବୀ ଜଗତର ବତୀଘର କହିଲେ ଅତ୍ୟୁକ୍ତି ହେବନାହିଁ।

ଏହି ମହାନ୍ ବୈଜ୍ଞାନିକଙ୍କୁ ସମ୍ମାନ ଜଣାଇବା ପାଇଁ ତାଙ୍କୁ ଇଂଲଣ୍ଡର ରାଣୀ 'ସାର୍' ଉପାଧିରେ ଭୂଷିତ କରିଥିଲେ। ସାର୍ ଆଲେକ୍‌ଜାଣ୍ଡାର ଫ୍ଲେମିଙ୍ଗଙ୍କର ନାମରେ ଅନେକ ଅନୁଷ୍ଠାନ ନାମିତ ହୋଇଛି। ଶେଷରେ ୭୪ ବର୍ଷ ବୟସରେ ଲଣ୍ଡନ ଠାରେ ୧୯୫୫ ମସିହା ମାର୍ଚ୍ଚ ମାସ ୧୧ ତାରିଖ ଦିନ ସେ ମର ଶରୀର ତ୍ୟାଗ କରିଥିଲେ।

ଅନେକ ମହାପୁରୁଷଙ୍କ ଜୀବନୀ ଆମେ ପଢୁ। କିଛି ବର୍ଷ ସେମାନେ ମନରେ ରହନ୍ତି। ପୁଣି ଧୀରେ ଧୀରେ ତାଙ୍କର ସ୍ମୃତି ମଣିଷ ମନରୁ ଲିଭିଯାଏ। କିନ୍ତୁ-ଏମିତି ବି ମହାପୁରୁଷ ଅଛନ୍ତି ଯେଉଁମାନଙ୍କୁ ମଣିଷ ଚେଷ୍ଟା କଲେ ବି ଭୂଲିପାରିବ ନାହିଁ। ଯେତେଦିନ ଯାଏ ମଣିଷ ଓ ଜୀବାଣୁ ରହିଛି, ସେତେ ଦିନ ଯାଏଁ ପେନ୍‌ସିଲିନ୍ ରହିବ। ଆଉ ପେନ୍‌ସିଲିନ୍ ଭିତରେ ସାର୍ ଫ୍ଲେମିଙ୍ଗଙ୍କ ଶାଶ୍ୱତ-ଜ୍ୟୋତି ଜନ ମାନସରେ ଅତୁଟ ରହିଥିବ। ଯଥାର୍ଥରେ କହିଲେ ସେ ଥିଲେ ମହାପୁରୁଷ ମାନଙ୍କର ମହାପୁରୁଷ।



# ଡ : ହରଗୋବିନ୍ଦ ଖୁରାନା ଓ କୃତ୍ରିମ ଜିନ୍

ଜନ୍ମ ୧୯୨୨ ମସିହା

ଆମଦେଶର ଅନେକ ସୁଯୋଗ୍ୟ ସନ୍ତାନ ବିଦେଶରେ ରହି ସୁନାମ ଅର୍ଜନ କରୁଛନ୍ତି । ସେମାନଙ୍କ ତାଲିକାରେ ଡ ହରଗୋବିନ୍ଦ ଖୁରାନାଙ୍କ ନାମ ସର୍ବୋଚ୍ଚ ସ୍ଥାନ ଅଧିକାର କରେ । ବିଜ୍ଞାନ ଜଗତରେ ଧ୍ରୁବତାରା ପରି ତାଙ୍କ ଉଦ୍ଭାବନ ଏକ ଦିଗ୍ ଦର୍ଶକ ଭାବେ କାର୍ଯ୍ୟ କରୁଛି ।

କୃତ୍ରିମ ଉପାୟରେ ଜିନ୍ ସୃଷ୍ଟି କରି ସେ ବଂଶାନୁକ୍ରମିକ ରୋଗ ଓ କ୍ୟାନସର ରୋଗ ପରି ମାରାତ୍ମକ ସ୍ୱାସ୍ଥ୍ୟ - ସମସ୍ୟାର ସମାଧାନ ପାଇଁ ପ୍ରଥମ ଆଲୋକ ବର୍ତ୍ତିକା ହୋଇ ଦେଖା ଦେଇଛନ୍ତି ।

୧୯୨୨ ମସିହା ଜାନୁଆରୀ ମାସ ଦୁଇ ତାରିଖ ଦିନ ପଞ୍ଜାବର ରାଜପୁରରେ ସେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଜନ୍ମସ୍ଥାନ ଅଧୁନା ପାକିସ୍ଥାନ ଅନ୍ତର୍ଗତ ପଞ୍ଜାବରେ । ତାଙ୍କ ବାପା ଜଣେ ନାମଜାଦା ବ୍ୟକ୍ତି ଥିଲେ । ଖୁରାନାଙ୍କ ପରିବାର ସେ ଅଞ୍ଚଳରେ ଏକମାତ୍ର ଶିକ୍ଷିତ ପରିବାର ଥିଲା । ପିଲାଦିନୁ ସେ ଖୁବ୍ ମେଧାବୀ, କର୍ମଠ ଓ ସତ୍ୟବାଦୀ ଥିଲେ ।

ଲାହୋର ଡି. ଏ. ଭି. କଲେଜରୁ ବି. ଏସ୍. ସି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାପରେ ସେ ପଞ୍ଜାବ ବିଶ୍ୱବିଦ୍ୟାଳୟରେ ରସାୟନ ବିଦ୍ୟା ଅଧ୍ୟୟନ କରିଲେ । ତାପରେ ଇଂଲଣ୍ଡର ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟରେ ପ୍ରଫେସର ଏ. ରବର୍ଟସନଙ୍କ ଅଧୀନରେ ଗବେଷଣାକରି ୧୯୪୧ ମସିହାରେ ପି. ଏଚ୍. ଡି. ପ୍ରାପ୍ତ ହେଲେ ।

ଅଧ୍ୟୟନ ସାରି ସେ ଭାରତ ଫେରିଲେ । ଅଧ୍ୟୟନ ଓ ଅଧ୍ୟାପନା କେବଳ ତାଙ୍କର ପେଶା ନଥିଲା । ସେତେବେଳେକୁ ଏହା ଛାଇପରି ତାଙ୍କ ସହିତ ଲାଗିରହିଥାଏ । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ରସାୟନ ତତ୍ତ୍ୱ ଶିକ୍ଷକ ହେବା ପାଇଁ ସେ ଆବେଦନ କଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ତାଙ୍କପରି ଏକ ଉଜ୍ଜ୍ୱଳ ପ୍ରତିଭାର ଆବେଦନ ପତ୍ର ପ୍ରତ୍ୟାଖାତ ହେଲା । ହର୍‌ଗୋବିନ୍ଦ ଆହତ ହେଲେ । ଦେଶ ସେବା କରିବାର ସ୍ୱପ୍ନ ମଉଳିଗଲା । ମନଦୁଃଖରେ ସେ ପୁଣିଥରେ ଫେରିଗଲେ ବିଦେଶକୁ । ଇଲଂଣ୍ଡର କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ହରଗୋବିନ୍ଦଙ୍କ ଆବେଦନକୁ ଅବିଳମ୍ବେ ସ୍ୱୀକାର କଲା ।

ନୋବେଲ୍ ପୁରସ୍କାର ବିଜେତା ସାର୍ ଆଲେକ୍‌ଜାଣ୍ଡର ଟଡ୍‌ଙ୍କ ଅଧୀନରେ ସେ ପୁଣିଥରେ ଗବେଷଣା କରିବାର ସୁଯୋଗ ପାଇଲେ । ତାଙ୍କ ବିଜ୍ଞତାର ପରିଚୟ ଧୀରେ ଧୀରେ ଇଂଲଣ୍ଡରୁ ବିଭିନ୍ନ ଦେଶକୁ ବ୍ୟାପିଲା ।

ପ୍ରତିବର୍ଷ ତାଙ୍କ ଦ୍ୱାରା ରଚିତ ବିଜ୍ଞାନ ସମ୍ବନ୍ଧୀୟ ପ୍ରବନ୍ଧମାନ ଆନ୍ତର୍ଜାତିକ ସ୍ତରରେ ଉଚ୍ଚ ପ୍ରଶଂସା ଲାଭ କଲା। ଅନେକ ଦେଶରୁ ତାଙ୍କୁ ପ୍ରଶଂସା ଓ ପ୍ରଶସ୍ତି ପ୍ରାପ୍ତି ହେଲା। ୧୯୫୨ ମସିହାରେ ସେ କାନାଡ଼ା ଯାତ୍ରା କଲେ ଏବଂ ସେହିଠାରେ ତାଙ୍କର ବିବାହ ଜଣେ ଉଚ୍ଚକ୍ଷମତା ସମ୍ପର୍ଣ୍ଣ ସୁଇସ୍ ଏମ୍. ପିଙ୍କ କନ୍ୟାଙ୍କ ସହିତ ସମ୍ପର୍ଣ୍ଣ ହେଲା।

ତାଙ୍କ ବୈଜ୍ଞାନିକ ଜୀବନରେ ସେ ଅନେକ ଉଚ୍ଚ ପଦବୀର ଅଧିକାରୀ ହୋଇଛନ୍ତି। ୧୯୫୩ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ ସେ କମନ୍‌ୱେଲ୍‌ଥ୍ ରିସର୍ଚ୍ଚ ଅର୍‌ଗାନାଇଜେସନ୍‌ର ଜୀବରସାୟନ ବିଭାଗର ମୁଖ୍ୟ ରୂପେ ଅବସ୍ଥାପିତ ହୋଇ ତାଙ୍କର କର୍ମନିପୁଣତା ଯୋଗୁ ସୁଖ୍ୟାତି ଅର୍ଜନ କରିଥିଲେ। ଏହି ସମୟ କାଳ ମଧ୍ୟରେ ସେ 'କୋ-ଏଞ୍ଜାଇମ୍-ଏ'' ବା ସହାନୁଘଟକ - କ ନାମକ ଏକ ରସାୟନ ପଦାର୍ଥ ପ୍ରସ୍ତୁତ କରି ସମସ୍ତଙ୍କୁ ଚମତ୍କୃତ କରିଥିଲେ। ଏହି ରସାୟନ ପଦାର୍ଥ ଶରୀରର ପାଚନ ପ୍ରଣାଳୀରେ ବ୍ୟବହୃତ ହୁଏ। ଏହି ଉଦ୍ଭାବନ ତାଙ୍କୁ ଭବିଷ୍ୟତ ପାଇଁ ପର୍ଯ୍ୟାପ୍ତ ପ୍ରେରଣା ଯୋଗାଇଲା।

୧୯୬୦ ମସିହାରେ ସେ ଆମେରିକାର ଉଇସ୍କନ୍‌ସିନ୍ ବିଶ୍ୱବିଦ୍ୟାଳୟରେ ଏମ. ଡବ୍ଲିୟୁ. ନୋରୋନ୍‌ବର୍ଗଙ୍କ ସହିତ ମିଶି ତାଙ୍କର ଗବେଷଣା ଚଳାଇଲେ। ମଣିଷ ଜୀବନର ଏକ ଜଟିଳ ସମସ୍ୟାର ସମାଧାନ କରିବା ଆଶାରେ ତାଙ୍କର ଏହି ଗବେଷଣା ଅଭିପ୍ରେତ ଥିଲା।

ଅସଂଖ୍ୟ ଜୀବକୋଷକୁ ନେଇ ମଣିଷ ଶରୀର ଗଠିତ। ପ୍ରତ୍ୟେକଟି ଜୀବକୋଷ ଆକାରରେ ଏତେ କ୍ଷୁଦ୍ରଯେ କେବଳ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ହିଁ ଏହାକୁ ଦେଖିବାକୁ ହୋଇଥାଏ। ଏହି ଜୀବକୋଷ ମଧ୍ୟରେ ଥିବା ନ୍ୟଷ୍ଟି ବା କେନ୍ଦ୍ରକ ହିଁ ଜୀବନର ଉତ୍ସ। ଯଦି କୌଣସି କୋଷ ମଧ୍ୟରୁ ଏହା କୌଣସି କାରଣରୁ କ୍ଷତିଗ୍ରସ୍ତ ହୁଏ ତେବେ ସଂପୃକ୍ତ ଜୀବକୋଷଟି ମୃତ ବୋଲି ଜାଣିବାକୁ ହେବ। ଏହି ନ୍ୟଷ୍ଟି ମଧ୍ୟରେ ପୁଣି ଅନ୍ୟାନ୍ୟ ଅନେକ କ୍ଷୁଦ୍ରାତିକ୍ଷୁଦ୍ର ପଦାର୍ଥ ରହିଛି। ତନ୍ମଧ୍ୟରୁ ଜିନ୍ ଅନ୍ୟତମ। ଏହି ଜିନ୍ ଆର୍.ଏନ୍.ଏ ଏବଂ ଡ଼ି.ଏନ୍.ଏ ନାମକ ଦୁଇଟି ରାସାୟନିକ ଅମ୍ଳ ପଦାର୍ଥକୁ

ନେଇ ଗଠିତ । ଭିନ୍ନ ଭିନ୍ନ ପ୍ରାଣୀର କୋଷରେ ଥିବା ଜିନ୍ ଭିନ୍ନ ପ୍ରକାରର ଓ ତନ୍ମଧ୍ୟରେ ଥିବା ଆର୍.ଏନ୍.ଏ ଏବଂ ଡି.ଏନ୍.ଏ ର ସଂଖ୍ୟା ଓ ବିନ୍ୟାସ ମଧ୍ୟ ଭିନ୍ନ ।

ଜିନ୍‌ର ଅନ୍ୟ ଏକ ପ୍ରକୃତି ହେଲା, ପ୍ରତ୍ୟେକ ସନ୍ତାନ ଜନ୍ମ ବେଳକୁ ବଂଶ ପରମ୍ପରାକ୍ରମେ ତା'ର ପିତା-ମାତାଙ୍କ ଠାରୁ ତାଙ୍କ ଜିନ୍ ପ୍ରକୃତିକୁ ଉତ୍ତରାଧିକାରୀ ସୂତ୍ରରେ ପ୍ରାପ୍ତ ହୁଏ । ପିତା-ମାତାଙ୍କ ଠାରେଥିବା କେତେକ ରୋଗ ମଧ୍ୟ ସନ୍ତାନ ଦେହକୁ ଜିନ୍ ମାଧ୍ୟମରେ ଚାଲି ଆସିଥାଏ । ତେଣୁ ସେ ପ୍ରକାର ବଂଶାନୁକ୍ରମିକ ରୋଗ ଚିକିତ୍ସା କରିବା ଖୁବ୍ କଷ୍ଟ ସାଧ୍ୟ ଜଣାପଡ଼େ ।

ଚିକିତ୍ସା ବିଜ୍ଞାନ ପାଇଁ ଏହି ସମସ୍ୟାର ସମାଧାନ କରିବାକୁ ହେଲେ ପ୍ରଥମେ ଜିନ୍‌ର ମୂଳ ଉପାଦାନ ଆର୍.ଏନ୍.ଏ ଓ ଡି.ଏନ୍.ଏ. କୃତ୍ରିମ ଉପାୟରେ ତିଆରି କରିବାକୁ ହେବ । ପ୍ରଥମେ ଖୁରାନା ଓ ତାଙ୍କର ସହଯୋଗୀ ଦ୍ୱୟ ମିଶି ଏହି ଜଟିଳ ଜୈବିକ ପଦାର୍ଥକୁ ତାଙ୍କ ରସାୟନାଗାରରେ ସଂଶ୍ଳେଷଣ କରିବାରେ ଲାଗିପଡ଼ିଲେ । ଯେତେବେଳେ ସେ ତାଙ୍କ ଗବେଷଣାରେ କୃତକାର୍ଯ୍ୟ ହେଲେ, ଅନେକ ରୋଗ ଚିକିତ୍ସା କରିବାପାଇଁ ଚିକିତ୍ସକ ମାନଙ୍କୁ ନୂଆସୂତ୍ର ମିଳିଗଲା । ତାଙ୍କର ଏହି ଯୁଗାନ୍ତକାରୀ ଉଦ୍ଭାବନ ପାଇଁ ସେ ଓ ତାଙ୍କ ସହଯୋଗୀ ଏମ୍. ଡବଲ୍ୟୁ ନୋରେନ୍‌ବର୍ଗ ଓ ଆର. ଡବ୍ଲ୍ୟୁ. ହିଲି ୧୯୬୮ ମସିହାରେ ଶରୀର ତତ୍ତ୍ୱ ଓ ଭେଷଜ ବିଜ୍ଞାନରେ ନୋବେଲ୍ ପୁରସ୍କାର ବିଜୟୀ ହେଲେ ।

ତେବେ ଖୁରାନାଙ୍କ ଗବେଷଣା ଏହିଠାରେ ଶେଷ ହୋଇଗଲାନାହିଁ । ବରଂ ଆରମ୍ଭ ହେଲା କହିଲେ ଚଳେ । ଆର୍.ଏନ୍.ଏ ଓ ଡି. ଏନ୍. ଏ ପରି ଜଟିଳ ପଦାର୍ଥର ସଂଶ୍ଳେଷଣରେ କୃତକାର୍ଯ୍ୟ ହେବାପରେ ସେ ସମ୍ପୂର୍ଣ୍ଣ ଜିନ୍ ତିଆରି କାର୍ଯ୍ୟରେ ଲିପ୍ତ ରହିଲେ ।

ଖୁରାନାଙ୍କ ଗବେଷଣା ଚାଲିଥାଏ କୃତ୍ରିମ ଉପାୟରେ କିପରି ଜିନ୍ ପ୍ରସ୍ତୁତ କରାଯିବ । ଏହା ଯଦି ସମ୍ଭବ ହୁଏ ତେବେ ବଂଶାନୁକ୍ରମିକ ରୋଗ

ଗୁଡ଼ିକର ଚିକିତ୍ସା ସହଜ ହୋଇପାରିବ । ଏଥିପାଇଁ ସେ ପ୍ରଥମେ ଇଶ୍ଚରିସିଆ କୋଲାଇ ନାମକ ମାନବ ଅନ୍ତରେ ବାସ କରୁଥିବା ଏକ ଜୀବାଣୁ ଉପରେ ପରୀକ୍ଷା ଚଳାଇଲେ । ଏହି ଜୀବାଣୁର ୨୦୭ ଟି ଜିନ୍ ରହିଛି । ସେମାନେ ଗୋଟି ଗୋଟି କରି ଏହାର ଜିନ୍ ଗୁଡ଼ିକ ସମ୍ପୂର୍ଣ୍ଣ ତିଆରି କଲେ କୃତ୍ରିମ ଉପାୟରେ । ୧୯୭୬ ମସିହା ଅଗଷ୍ଟ ମାସରେ ପ୍ରଥମକରି ସେମାନେ ଏହି ଜୀବାଣୁ ଦେହରୁ ପ୍ରାକୃତିକ ଜିନ୍‌କୁ ବାହାର କରିଦେଇ ମଣିଷ ତିଆରି ଜିନ୍ ଟିଏ ଅବସ୍ଥାପିତ କରାଇଲେ । ଯେତେବେଳେ ଜୀବାଣୁଟି ସ୍ୱାଭାବିକ୍ ଭାବେ କାମକଲା ଖୁରାନା ଆନନ୍ଦରେ ନାଚି ଉଠିଲେ । ତାଙ୍କ ଗବେଷଣାର ସଫଳତା ସମ୍ବାଦ ସାରା ବିଶ୍ୱରେ ନିମିଷକ ମଧ୍ୟରେ ବ୍ୟାପିଗଲା । ଅବଶ୍ୟ ମଣିଷର ଜିନ୍ ତିଆରି ହେବାକୁ ଆହୁରି ଡେରୀ ଅଛି । ତଥାପି ଭବିଷ୍ୟତରେ ଏହା ଯେ ନିଶ୍ଚୟ ସମ୍ଭବ ହୋଇପାରିବ ତାହା ଖୁରାନାଙ୍କ ଗବେଷଣାରୁ ସ୍ପଷ୍ଟ ହୋଇଯାଇଛି ।

ଖୁରାନାଙ୍କ ଗବେଷଣା ଯେପରି ଅନନ୍ତ, ତାଙ୍କୁ ଦେଶ ବିଦେଶରୁ ମିଳୁଥିବା ପ୍ରଶସ୍ତିପତ୍ର ମଧ୍ୟ ଅସୀମ । କାନାଡ଼ାର ରାସାୟନିକ ଅନୁଷ୍ଠାନର ସର୍ବଶ୍ରେଷ୍ଠ ମର୍ଯ୍ୟାଦା, କାନାଡ଼ାର ଜନସେବା ସାଧନ ପାଇଁ ସ୍ୱର୍ଣ୍ଣ ପଦକ ତଥା, ସୁଇଜର୍‌ଲ୍ୟାଣ୍ଡ, ଜର୍ମାନୀ, ଇଂଲଣ୍ଡ ଓ ଆମେରିକାରୁ ପ୍ରାୟ ପ୍ରତିବର୍ଷ ତାଙ୍କୁ ବିଭିନ୍ନ ଉଚ୍ଚ ଉପାଧିରେ ଭୂଷିତ କରାଯାଉଛି ।

ଅନେକ ବର୍ଷ ପୂର୍ବେ ସେ କାନାଡ଼ାର ନାଗରିକତ୍ୱ ଗ୍ରହଣ କରିସାରିଛନ୍ତି । ୧୯୬୯ ମସିହାରେ ତାଙ୍କୁ ଭାରତ ସରକାର ପଦ୍ମଭୂଷଣ ଉପାଧିରେ ଏବଂ ପଞ୍ଜାବ ବିଶ୍ୱବିଦ୍ୟାଳୟ ତାଙ୍କୁ ବିଜ୍ଞାନର ସର୍ବୋଚ୍ଚ ଡି.ଏସ୍.ସି. ଉପାଧି ପ୍ରଦାନ କରିଥିଲେ ।

ଡ : ହରଗୋବିନ୍ଦ ଖୁରାନାଙ୍କ ଜୀବନ ଗବେଷଣା ପାଇଁ ଉତ୍ସର୍ଗୀକୃତ । ପ୍ରତିଦିନ ପ୍ରାୟ ୧୮ ଘଣ୍ଟା ସମୟ ସେ ନିଜ ଗବେଷଣାଗାରରେ ବିତାନ୍ତି । ଜୀବନରେ ଏତେ ଉଚ୍ଚ ପଦବୀ, ଉପାଧି ଓ ପୁରସ୍କାର ପାଇଁ ସେ କେବେ ଗର୍ବିତ ହୋଇ ନାହାନ୍ତି । ବରଂ ପ୍ରତ୍ୟେକଟି ପୁରସ୍କାର ତାଙ୍କୁ ଆହୁରି ଅଧିକ ପରିଶ୍ରମ କରିବାପାଇଁ ପ୍ରେରଣା ଯୋଗାଇଛି ।

ଆଜି ମଧ୍ୟ ୭୫ ବର୍ଷ ବୟସରେ ସେ ଗବେଷଣାରତ । ଜୀବକୋଷ ମଧ୍ୟରେ ଜିନ୍ କିପରି କାମ କରେ, କାହିଁକି କାମକରେ ଓ କଣ ପାଇଁ ଏହା ଅକାମୀ ହୋଇଯାଏ - ଏହି ସବୁ ଅଡୁଆ ପ୍ରଶ୍ନ ସମାଧାନ ପାଇଁ ସେ ବ୍ୟସ୍ତ । ସାରା ଦୁନିଆର ବୈଜ୍ଞାନିକ ମାନେ ଡଃ ଖୁରାନାଙ୍କ ମୁଖ ନିସୃତ ବାଣୀକୁ ଗ୍ରହିଁ ରହିଛନ୍ତି । ତାଙ୍କର ବର୍ତ୍ତମାନଗବେଷଣାର ଫଳାଫଳ ଉପରେ ଚିକିତ୍ସା ଶାସ୍ତ୍ରର ଭବିଷ୍ୟତ ନିର୍ଭର କରୁଛି । ଜନ୍ମଗତ ବିକଳାଙ୍ଗ ଦୋଷ ଦୂରକରିବା ପାଇଁ ତଥା କର୍କଟ ରୋଗ ପରି ଏକ ଭୟାନକ ରୋଗର କାରଣ ଜାଣିବା ପାଇଁ ଏହା ଭବିଷ୍ୟତରେ ନିଶ୍ଚୟ ସାହାଯ୍ୟ କରିବ ।

ପ୍ରକୃତରେ ଦେଖିବାକୁ ଗଲେ ଏହି ଜିନ୍‌ର ଗବେଷଣା ଓ ପ୍ରତିରୋପଣ ଫଳାଫଳକୁ କେନ୍ଦ୍ରକରି ଆଣବିକ ଜୀବ ବିଜ୍ଞାନ ନାମକ ଏକ ନୂତନ ବିଜ୍ଞାନର ମଧ୍ୟ ସୃଷ୍ଟି ହୋଇସାରିଲାଣି । ଏହା ମାଧ୍ୟମରେ ଜୀବର ଜିନ୍ ବା ଗୁଣସୂତ୍ରରେ ପରିବର୍ତ୍ତନ କରି ନୂତନ ପ୍ରକାରର ଜୀବ ସୃଷ୍ଟି କରାଗଲାଣି । ଉନ୍ନତ ମାନର ଗୃହପାଳିତ ପଶୁ କମ୍ ସମୟ ଭିତରେ ପ୍ରସ୍ତୁତ କରିବାରେ ମଧ୍ୟ ଏହି ବିଜ୍ଞାନ ସକ୍ଷମ ହୋଇଛି । ଏହା ଫଳରେ ମାନବ ସମାଜର ପ୍ରଭୂତ ଉନ୍ନତି ସାଧିତ ହୋଇଛି ।

ମାନବ କଲ୍ୟାଣ ପାଇଁ ଆୟୁର୍ବିଜ୍ଞାନର ସମସ୍ତ ବିଭାଗ ମିଶି ଏ ପର୍ଯ୍ୟନ୍ତ ଯେଉଁ ପରିମାଣର କାର୍ଯ୍ୟ କରିପାରିଛି ଦିନେ କେବଳ ଆଣବିକ ଜୀବ ବିଜ୍ଞାନ ଏକାହିଁ ତା'ଠାରୁ ଅଧିକ କାର୍ଯ୍ୟ କରିବାର ନିର୍ଭର ପ୍ରତିଶ୍ରୁତି ମିଳିଲାଣି । ବହୁମୂତ୍ର ରୋଗୀ ମାନଙ୍କ ପାଇଁ ଜୀବାଣୁ ମାଧ୍ୟମରେ ଇନ୍‌ସୁଲିନ୍ ତିଆରି କରାଗଲାଣି । କ୍ୟାନସର୍ ରୋଗପାଇଁ ବ୍ୟବହୃତ ଅନେକ ବହୁମୂଲ୍ୟ ଔଷଧ ଏହି ବିଜ୍ଞାନ ସାହାଯ୍ୟରେ ପ୍ରସ୍ତୁତ ହେଉଛି । ବୃଦ୍ଧି ବକାଶ ହରମୋନ୍ ଯେଉଁ ଜିନ୍‌ର ପ୍ରଭାବରୁ ପ୍ରସ୍ତୁତ ହୁଏ ତାହାକୁ ପୃଥକ କରି ବାମନ ଭ୍ରୁଣରେ ପ୍ରବେଶ କରାଇଲେ ସ୍ୱାଭବିକ ଶିଶୁ ଜନ୍ମ ନେଇପାରିବ ବୋଲି ମତ ପ୍ରକାଶ ପାଇଲାଣି । ଏତଦ୍ ବ୍ୟତୀତ ଭୂତାଣୁର ଜିନ୍‌କୁ ନେଇ ବିଭିନ୍ନ ରୋଗ ପାଇଁ ସହଜରେ ନିରାପଦ ରୋଗ ପ୍ରତିଷେଧକ ଟୀକାମାନ ତିଆରି ହୋଇପାରିବ ବୋଲି ବିଶ୍ୱର କରାଗଲାଣି ।

ଅବଶ୍ୟ ବର୍ତ୍ତମାନ ଏହି ଆଣବିକ ଜୀବ ବିଜ୍ଞାନ ଶୈଶବ ଅବସ୍ଥାରେ ରହିଛି । ମାନବ ଶରୀରର କ୍ରୋମୋଜୋମରେ ଏକହଜାରରୁ ଉର୍ଦ୍ଧ୍ୱ ଗୁଣ ସୂତ୍ର ବା ଜିନ୍ ରହିଛନ୍ତି । ତେଣୁ ସେଥିମଧ୍ୟରୁ ପ୍ରତ୍ୟେକ ଗୁଣସୂତ୍ରକୁ ଚିହ୍ନି ଅଲଗା କରି ପୁଣି ପ୍ରତିରୋପଣ କରିବା ସହଜ କଥା ନୁହେଁ । ତଥାପି ପୃଥିବୀର ପ୍ରାୟ ୨୨୦ ଟି ଦେଶରେ ହଜାର ହଜାର ସଂଖ୍ୟକ ବୈଜ୍ଞାନିକ ଏହି ବିଷୟରେ ଗବେଷଣାରତ ଅଛନ୍ତି । ତେଣୁ ନିକଟ ଭବିଷ୍ୟତରେ ମାନବର ସ୍ୱାସ୍ଥ୍ୟ ଜନିତ ଅନେକ ଅସମାହିତ ପ୍ରଶ୍ନର ସମାଧାନ ହେବା ପ୍ରାୟ ନିଶ୍ଚିତ ।

କିନ୍ତୁ ଏ ସମସ୍ତ ପରୀକ୍ଷା ଖୁରାନାଙ୍କ ଦ୍ୱାରା ପ୍ରଦର୍ଶିତ ଆଲୋକରେ ହିଁ ପରିଚାଳିତ । କୃତ୍ରିମ ଜିନ୍ ପ୍ରସ୍ତୁତ କରିସାରିବାପରେ ସେ ଆଧୁନିକ ବିଜ୍ଞାନ ଜଗତରେ ଏକ ନୂତନ ସ୍ରଷ୍ଟାରୂପେ ସମ୍ମାନ ପାଉଛନ୍ତି ଓ ପାଉଥିବେ । ତାଙ୍କ ଗବେଷଣା ଜୀବନରେ ଫୁଲ - ଚନ୍ଦନ ବର୍ଷା ହେଉଥାଉ । ମାନବ କଲ୍ୟାଣ ପାଇଁ ସେ ଶତାୟୁ ହୁଅନ୍ତୁ ଏହାହିଁ ବିଶ୍ୱବାସୀଙ୍କ କାମନା ।





# ହୃଦଯନ୍ତ୍ର ପ୍ରତିରୋପଣ ଓ ଡା କ୍ରିଷ୍ଟିୟନ୍ ବେର୍ନାର୍ଡ଼

ଜନ୍ମ ୧୯୨୨ ମସିହା

କୌଣସି ମେସିନ୍‌ର ଗୋଟିଏ ଅଂଶ ନଷ୍ଟ କିମ୍ବା ଅକାମୀ ହୋଇଗଲେ, ସେଇ ଅଂଶଟିକୁ ବଦଳାଇ ଦିଆଯାଏ। ସେହିପରି ମଣିଷ ଶରୀରର କୌଣସି ଅଂଶ ନଷ୍ଟ କିମ୍ବା ଅକାମୀ ହୋଇଗଲେ ତାହା ବଦଳାଇ ହେବ କି ନାହିଁ, ଏହା

ଅନେକଦିନ ପର୍ଯ୍ୟନ୍ତ ଏକ ଅସମାହିତପ୍ରଶ୍ନବାଚୀ ହୋଇଥିଲା। ଚିକିତ୍ସା ବିଜ୍ଞାନର କ୍ରମବିକାଶ ଫଳରେ ପ୍ରଥମେ ଚର୍ମ ଓ ପରେ ଅସ୍ଥି ମାନଙ୍କରେ ପ୍ରତିରୋପଣ କରିବାରେ ମଣିଷ ସକ୍ଷମ ହେଲା। ବିଭିନ୍ନ ରୋଗ କିମ୍ବା ଦୁର୍ଘଟଣା ଯୋଗେ ଏହି ଅଂଶଗୁଡ଼ିକ କ୍ଷତି ଗ୍ରସ୍ତ ହେଲେ ଶରୀରର ସୁସ୍ଥ ସ୍ଥାନରୁ ଚର୍ମ କିମ୍ବା ଅସ୍ଥିନେଇ ଅସୁସ୍ଥ ସ୍ଥାନରେ ଲଗାଇ ଦିଆଗଲା। ଅପେକ୍ଷାକୃତ ଭାବେ ଏହା ଏକ ସହଜସାଧ୍ୟ ଅସ୍ତ୍ରଚିକିତ୍ସା। କାରଣ ପ୍ରତିରୋପିତ ଅଂଶ ରୋଗୀର ନିଜ ଶରୀରରୁହିଁ ଗୃହୀତ ହୋଇଥାଏ।

କିନ୍ତୁ ଅନ୍ୟ ଏକବ୍ୟକ୍ତିର ଶରୀରରୁ ଏକ ଅଂଗ ଶରୀରର ପ୍ରତିରୋପଣ କରାଯିବାରେ ଅନେକ ପ୍ରତିବନ୍ଧ ରହିଛି। ପ୍ରତ୍ୟେକ ବ୍ୟକ୍ତିର ଶରୀରରେ ଏକ ପ୍ରତିରୋଧକ ଶକ୍ତି ଥାଏ। ତା'ଫଳରେ ମଣିଷ ଶରୀରରେ ଯେ କୌଣସି ପୁଷ୍ଟିସାରଯୁକ୍ତ ବାହ୍ୟବସ୍ତୁ ପ୍ରବେଶ କଲେ, ତାହାକୁ ଶରୀର ଶତ୍ରୁଭାବି ବହିଷ୍କାର କରିବାକୁ ଚେଷ୍ଟାକରେ। ଏହାଛଡ଼ା ବିଭିନ୍ନ ରକ୍ତ ଗୋଷ୍ଠୀ (Blood Group) ବି ରହିଛି। ଗ୍ରହୀତା କେବଳ ନିଜ ରକ୍ତଗୋଷ୍ଠୀ ସମ୍ପନ୍ନ ଦାତାଠାରୁ ହିଁ ଅଂଗ ଗ୍ରହଣ କରିପାରେ।

ତା'ଛଡ଼ା ବୃକକ୍, ଯକୃତ, ଚକ୍ଷୁପଟଳ ଜୀବନ ଧାରଣ ପାଇଁ ଏକାନ୍ତ ଅତ୍ୟାବଶ୍ୟକ। ଏହାକୁ ଅନ୍ୟପାଇଁ ଦାନ କରିବା ମଧ୍ୟ ସହଜ ନୁହେଁ। ତେଣୁ ଅନେକ ଜଟିଳତା ମଧ୍ୟରେ ଏହି ପ୍ରଶ୍ନ ଅସମାହିତ ହୋଇ ଅନେକ ଦିନ ରହିଲା।

୧୯୦୧ ମସିହା ପର ଠାରୁ ରକ୍ତ ସଂଗ୍ରହଣ ଓ ରକ୍ତଦାନ ସାରା ବିଶ୍ୱରେ ନିୟମିତ ଗ୍ଭଲିଲା ପରେ ପୁଣି ଥରେ ଅଂଗ ପ୍ରତିରୋପଣ କୃତକାର୍ଯ୍ୟ ହେଲା। ତା'ପରେ ପରେ ସୁସ୍ଥ ମଣିଷର ବୃକକ୍ ମଧ୍ୟ ରୋଗୀ ଦେହରେ ପ୍ରତିରୋପିତ ହେଲା।

ଶେଷରେ ହୃଦଯନ୍ତ୍ର ବିଷୟ ଚିନ୍ତା କରାଗଲା। ଯେଉଁ କ୍ଷେତ୍ରରେ ହୃଦଯନ୍ତ୍ର ଚରମ ରୋଗାକ୍ରାନ୍ତ ହେତୁ ବ୍ୟକ୍ତିର ଆୟୁଷ ମାତ୍ର କେତେ ସପ୍ତାହ ବା ମାସ ବୋଲି ଅନୁମିତ ହୁଏ, ସେ କ୍ଷେତ୍ରରେ ରୋଗୀର ଶରୀରରେ

ଅନ୍ୟର ହୃଦଯନ୍ତ୍ର ପ୍ରତିରୋପଣ କରି ତା'ର ଆୟୂଷ ବୃଦ୍ଧି କରାଯାଇ ପାରିବକି? ଏହି ଚିନ୍ତା ଅନେକ ଚିକିତ୍ସକଙ୍କୁ ବ୍ୟତିବ୍ୟସ୍ତ କଲା। କାରଣ ଯକୃତ ଓ ହୃଦଯନ୍ତ୍ର ମୃତ୍ୟୁର ଅଳ୍ପକ୍ଷଣ ପରେ ସଢ଼ିବାକୁ ଆରମ୍ଭ କରେ। ୧୯୫୮ ମସିହାରେ ନରମାନ୍ ଇ, ସମଓ୍ୱେ ନାମକ ସର୍ଜନ ପ୍ରଥମେ ଷ୍ଟାନଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଏକ କୁକୁର ଦେହରେ ହୃଦଯନ୍ତ୍ର ପ୍ରତିରୋପଣ କ୍ରିୟା ସମ୍ପାଦନ କଲେ। ଅପରେସନରେ ସେ ସଫଳ ହେଲେ। କିନ୍ତୁ ଅଳ୍ପଦିନ ପରେ ଗ୍ରହୀତା କୁକୁରଟିର ମୃତ୍ୟୁ ହେଲା। ତେଣୁ ସମଓ୍ୱେ ପରବର୍ତ୍ତୀ ୧୦ ବର୍ଷ କାଳ ତାଙ୍କର ଅପରେସନ୍ କୌଶଳର ଆବଶ୍ୟକୀୟ ପରିବର୍ତ୍ତନ କରିବାରେ ମନୋନିବେଶ କଲେ। ଇତି ମଧ୍ୟରେ ୧୯୬୭ ମସିହାରେ ଦକ୍ଷିଣ ଆଫ୍ରିକୀୟ ଅନ୍ୟଜଣେ ଅସ୍ତ୍ରଚିକିତ୍ସା ବିଶାରଦ କେପ୍ ଟାଉନସ୍ଥିତ ଗ୍ରୁଟ୍-ସୁର୍ ହସ୍ପିଟାଲରେ ପ୍ରଥମେ ମଣିଷ ଦେହରେ ପ୍ରତିରୋପଣ କରିବାରେ ସକ୍ଷମ ହେଲେ। ଅସ୍ତ୍ର ଚିକିତ୍ସା ଜଗତର ଏହି ଯୁଗାନ୍ତକାରୀ ମହାପୁରୁଷଙ୍କର ନାମ ଡାଃ. କ୍ରିଷ୍ଟିଆନ ବେନାର୍ଡ଼। ବେନାର୍ଡ଼ଙ୍କ ଏହି ସଫଳ ପରୀକ୍ଷା ପୃଥିବୀର ଅନ୍ୟାନ୍ୟ ଅନେକ ସ୍ଥାନରେ ଅନୁକରଣ କରାଯାଇ ବର୍ଷକ ମଧ୍ୟରେ ୧୦୧ଟି ହୃଦଯନ୍ତ୍ର ପ୍ରତିରୋପଣ କାର୍ଯ୍ୟ ସମ୍ପାଦିତ ହେଲା। କିନ୍ତୁ ଦୁଃଖର କଥା ଯେ, ତନ୍ମଧ୍ୟରୁ ଅଧିକାଂଶ କ୍ଷେତ୍ରରେ ହୃଦଯନ୍ତ୍ର ଗ୍ରହୀତା ଅଧିକ ଦିନ ବଞ୍ଚି ପାରିଲା ନାହିଁ। ଗ୍ରହୀତାର ପ୍ରତିରୋଧକ ଶକ୍ତି ଯୋଗୁଁ ପ୍ରତିରୋପିତ ହୃଦଯନ୍ତ୍ରକୁ ଅଧିକାଂଶ କ୍ଷେତ୍ରରେ ଶରୀର ଗ୍ରହଣ କରିଲା ନାହିଁ। ଯେଉଁ କ୍ଷେତ୍ରରେ ପ୍ରତିରୋଧକ ଶକ୍ତିକୁ ଔଷଧ ଦେଇ ଅବଦମିତ କରାଗଲା, ବିଭିନ୍ନ ଜୀବାଣୁ ସଂକ୍ରମଣ ଫଳରେ ରୋଗୀ ନିମୋନିଆ ଆଦି ଭୟାବହ ରୋଗର ଶୀକାର ହେଲା। ପୁଣି ପ୍ରତିରୋପଣ ପାଇଁ ସୁସ୍ଥ ହୃଦଯନ୍ତ୍ର ବାରମ୍ବାର ପାଇବା ମଧ୍ୟ କଷ୍ଟସାଧ୍ୟ। ତେଣୁ ଧୀରେ ଧୀରେ ଅନ୍ୟ ଚିକିତ୍ସକମାନେ ଏ ଦିଗରେ ନିରୁତ୍ସାହିତ ହେଲେ। କିନ୍ତୁ କ୍ରିଷ୍ଟିଆନ ବେନାର୍ଡ଼, ସମେଓ୍ୱେ ଓ ଅନ୍ୟ କେତେଜଣ ଶଲ୍ୟଚିକିତ୍ସକ ପରାଜୟ ସ୍ୱୀକାର ନ କରି ଏ ଦିଗରେ ଅଧିକ ମନୋନିବେଶ କଲେ।

ସେମାନଙ୍କ କ୍ରମାଗତ ଉଦ୍ୟମ ଫଳରେ ଧୀରେ ଧୀରେ ହୃଦଯନ୍ତ୍ର ପ୍ରତିରୋପିତ ବ୍ୟକ୍ତିର ଆୟୁଷ ବଢ଼ିଲା। ତାଙ୍କଦ୍ୱାରା ଶଲ୍ୟଚିକିତ୍ସା

କରାଯାଇଥିବା ବ୍ୟକ୍ତିମାନଙ୍କ ଶତକଡ଼ା ୫୦ ଭାଗ ଏକବର୍ଷରୁ ଅଧିକ ଓ ଶତକଡ଼ା ପ୍ରାୟ ୨୫ ଭାଗ ବ୍ୟକ୍ତି ୫ ବର୍ଷରୁ ୮ ବର୍ଷକାଳ ଶଲ୍ୟଚିକିତ୍ସା ପରେ କାର୍ଯ୍ୟକ୍ଷମ ଜୀବନ ଫେରି ପାଇଲେ । ତାଙ୍କର ସଫଳତା ଅନ୍ୟମାନଙ୍କ ମଧ୍ୟରେ ଆଶାର ସଂଗ୍ରହ କରାଇଲା । ଫଳତଃ ପୁନର୍ବାର ପୃଥିବୀର ଅନେକ କେନ୍ଦ୍ରମାନଙ୍କରେ ହୃଦଯନ୍ତ୍ର ପ୍ରତିରୋପଣର ଚେଷ୍ଟା କରାଗଲା ।

ବର୍ତ୍ତମାନ ଆଦୃତ ପ୍ରଣାଳୀ ଅନୁଯାୟୀ ସଦ୍ୟମୃତ ବ୍ୟକ୍ତି, ଓ ଯେଉଁ ବ୍ୟକ୍ତି ସାଂଘାତିକ ଦୁର୍ଘଟଣା ଗ୍ରସ୍ତ ଏବଂ ନିଶ୍ଚିତ ଭାବେ ମୃତ୍ୟୁପଥଗାମୀ ବୋଲି ବିବେଚିତ ହୁଏ, ତା'ର ହୃଦଯନ୍ତ୍ରକୁ ନେଇ ରୋଗୀର ହୃଦଯନ୍ତ୍ରକୁ ବାହାର କରି ସେ ସ୍ଥାନରେ ପ୍ରତିରୋପିତ କରାଯାଏ । ଯାହାର ମସ୍ତିଷ୍କର ମୃତ୍ୟୁ ଘଟିଥାଏ, କିନ୍ତୁ ହୃଦଯନ୍ତ୍ର କାର୍ଯ୍ୟ କରୁଥାଏ ସେଭଳି ଲୋକର ହୃଦଯନ୍ତ୍ର ପ୍ରତିରୋପଣ ପାଇଁ ଗ୍ରହଣ କରାଯାଏ । ରୋଗୀର ଅଳିନ୍ଦର ଯେଉଁ ଅଂଶରେ ହୃଦଯନ୍ତ୍ର ସ୍ନାୟୁ ଥାଏ ସେ ଅଂଶକୁ ଛାଡ଼ି ଅନ୍ୟ ସମସ୍ତ ଅଂଶକୁ ବାହାର କରିଦିଆଯାଏ, ଏହି ଅଂଶରେ ଥିବା ସ୍ନାୟୁ ହୃଦୟର ସ୍ପନ୍ଦନକୁ ନିୟନ୍ତ୍ରିତ କରିଥାଏ । ଇତି ମଧ୍ୟରେ ହୃଦ୍‌ଯନ୍ତ୍ର ଦାତାର ହୃଦଯନ୍ତ୍ରକୁ ବାହାରକୁ ଆଣି ଅତିଥଣ୍ଡା ଲବଣାକ୍ତ ଦ୍ରବଣ ମଧ୍ୟରେ ବୁଡ଼ାଇ ରଖାଯାଏ । ପ୍ରତିରୋପଣ ସମୟରେ ଦାତା ହୃତପିଣ୍ଡର ପ୍ରତ୍ୟେକ ଧମନୀକୁ ଗ୍ରହୀତା ହୃତ୍‌ପିଣ୍ଡର ଧମନୀ ମାନଙ୍କ ସହିତ ସଂଯୋଗ କରାଯାଇଥାଏ । ପ୍ରତିରୋପିତ ହୃଦଯନ୍ତ୍ରକୁ ଦାତାର ଶରୀରସ୍ଥ ପ୍ରତିରୋଧ ଶକ୍ତି ଯେପରି ବହିଷ୍କାର ନ କରିବ ସେଥିପାଇଁ ଗ୍ରହୀତାର ପ୍ରତିରୋଧ ଶକ୍ତିକୁ ଚପାଇବା ପାଇଁ ଔଷଧ ଦିଆଯାଏ । ପ୍ରେଡନିସୋଲୋନ୍ ଓ ଆଣ୍ଟିଥାଇ-ମସାଇଟ୍ ଗ୍ଲୋବ୍ୟୁଲିନ୍ ଆଦି ଔଷଧ ଶରୀରର ଅନେକ ପ୍ରତିରୋଧ ଶକ୍ତିକୁ ଦବାଇ ରଖେ । ରକ୍ତ ଜମାଟ ନ ବାନ୍ଧିବା ପାଇଁ ଏବଂ ଧମନୀ ଗୁଡ଼ିକ ଯେପରି କଠିନ ନହେବ ସେଥିପାଇଁ ମଧ୍ୟ ଔଷଧ ଦିଆଯାଏ ।

ହୃଦଯନ୍ତ୍ର ପ୍ରତିରୋପଣ ଭଳି ଏକ ଦୁଃସାଧ୍ୟ କାର୍ଯ୍ୟକୁ ସଫଳତାର ସହିତ ସମ୍ପାଦନ କରି କ୍ରିଷ୍ଟିଆନ ବେନାର୍ଡ଼ ଅଙ୍ଗ ପ୍ରତିରୋପଣ ଦିଗରେ ଅପ୍ରତିଦ୍ୱନ୍ଦୀ ବାଦଶାହା ରୂପେ ଖ୍ୟାତି ପାଇଛନ୍ତି । ମଣିଷ ଜୀବନରେ ଗୁଣାତ୍ମକ ବିକାଶପାଇଁ ସେ ତାଙ୍କ ଜୀବନକୁ ଉତ୍ସର୍ଗ କରିଥିଲେ । ଅଂଗ ପ୍ରତିରୋପଣ

ହୁଏତ ବହୁ ପୁରାତନ। ଏପରିକି ଖ୍ରୀଷ୍ଟ ଜନ୍ମର ବହୁପୂର୍ବରୁ ଶୁଶ୍ରୁତ ସଂହିତାରେ ମଧ୍ୟ ଚର୍ମପ୍ରତିରୋପଣ ଓ ଅସ୍ଥି ପ୍ରତିରୋପଣର ବର୍ଣ୍ଣନା ରହିଛି। କିନ୍ତୁ ସେଗୁଡ଼ିକ ଖୁବ୍ ସହଜ। ବିଂଶ ଶତାବ୍ଦୀରେ ହେଉଥିବା ବୃକକ ପ୍ରତିରୋପଣ ତା ଅପେକ୍ଷା ଅଧିକ ଜଟିଳ। ତେବେ ନିଃସନ୍ଦେହ ଯେ ହୃଦଯନ୍ତ୍ର ପ୍ରତିରୋପଣ କାର୍ଯ୍ୟ ସବୁଠାରୁ କଠିନ ଓ ଜଟିଳ। ଅନ୍ୟ ସମସ୍ତ ପ୍ରତିରୋପଣ କ୍ରିୟାର କାରିଗର ବା ଚିକିତ୍ସକ ଯଦି ବାରଶହ ବଢ଼େଇ ହୁଅନ୍ତି ତେବେ କ୍ରିଷ୍ଟିୟାନ, ବେନାର୍ଡ଼ ଧର୍ମପଦ ହୋଇ ପ୍ରତିରୋପଣ କୋଣାର୍କର ଚୂଡ଼ା ସଜାଡ଼ି ଥିଲେ।

୧୯୨୨ ମସିହା ନଭେମ୍ବର ୮ ତାରିଖ ଦିନ ଦକ୍ଷିଣ ଆଫ୍ରିକାର ପଶ୍ଚିମ ବରଫୋର୍ଟ ଠାରେ ଏକ ମଧ୍ୟବିତ୍ତ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ। କଠିନ ଅନୁଶାସନ ମଧ୍ୟରେ ତାଙ୍କ ବାଲ୍ୟଜୀବନ କଟିଥିଲା। ଦକ୍ଷିଣ ଆଫ୍ରିକାର କଳା ଲୋକମାନଙ୍କ ଦୁଃଖ ଦୁର୍ଦ୍ଦଶା ଓ ରୋଗାକ୍ରାନ୍ତ ଅସହାୟ ଜୀବନ ତାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା। ବାଲ୍ୟକାଳରୁ ସେ ଗରିବ ରୋଗୀମାନଙ୍କ ପାଇଁ ନୂଆ କିଛି କରିବାପାଇଁ ଇଚ୍ଛା କରୁଥିଲେ।

ବେନାର୍ଡ଼ଙ୍କୁ ମାତ୍ର ୩୧ ବର୍ଷ ବୟସ ବେଳେ ସେ କେପ୍‌ଟାଉନସ୍ଥିତ ଗ୍ରୁଟସୁର ହସ୍ପିଟାଲରେ ଆବାସିକ ଅସ୍ତ୍ର ଚିକିତ୍ସକ ଭାବେ କାର୍ଯ୍ୟରତ ଥିଲେ। ସେହି ସମୟରେ ସେ ପ୍ରଥମେ ଆବିଷ୍କାର କଲେ ଯେ, ଗର୍ଭାବସ୍ଥାରେ ଭ୍ରୂଣକୁ ଯଥେଷ୍ଟ ରକ୍ତ ନ ମିଳିବା ଫଳରେ କ୍ଷୁଦ୍ରାନ୍ତ୍ରରେ ଏକ ଜନ୍ମଗତ ଅସ୍ୱାଭାବିକତା ଦେଖାଦିଏ। ଏହାକୁ ଇଣ୍ଟେଷ୍ଟିନାଲ ଆଟ୍ରେସିଆ ବା ଆନ୍ତ୍ରିକ ନିବଦ୍ଧତା କୁହାଯାଏ। ଏ ପ୍ରକାର ନ୍ୟୁନତା ଯୋଗୁଁ ଶିଶୁ ଜନ୍ମ ହେବାର ଅଳ୍ପଦିନ ମଧ୍ୟରେ ମୃତ୍ୟୁମୁଖରେ ପଡ଼େ। ତାଙ୍କର ଏହି ଆବିଷ୍କାର ଫଳରେ ଏହି ନ୍ୟୁନତାର ସଂଶୋଧନ ପାଇଁ ଅସ୍ତ୍ରଚିକିତ୍ସା ମଧ୍ୟ ପ୍ରଚଳିତ ହେବା ଫଳରେ ଅନେକ ଶିଶୁ ଅକାଳ ମୃତ୍ୟୁରୁ ରକ୍ଷା ପାଇଲେ।

୧୯୫୬ ରୁ ୧୯୫୮ ମସିହା ପର୍ଯ୍ୟନ୍ତ ସେ ମନେସୋଟା ବିଶ୍ୱବିଦ୍ୟାଳୟରେ ତାଙ୍କର ଗବେଷଣା କଲେ। ତାପରେ ସେ ଗ୍ରୁଟ୍‌ସୁରସ୍ଥିତ

ହସ୍ପିଟାଲରେ ବରିଷ୍ଠ-ବକ୍ଷ-ଶଲ୍ୟ ଚିକିତ୍ସକ ରୂପେ ଅବସ୍ଥାପିତ ହେଲେ। ଅଳ୍ପଦିନ ମଧ୍ୟରେ ସେ ତାଙ୍କ ହସ୍ପିଟାଲରେ ଉନ୍ମୁକ୍ତ ହୃଦ-ଶଲ୍ୟ ଚିକିତ୍ସାର ପ୍ରଚଳନ କରାଇଲେ। ହୃଦଯନ୍ତ୍ର କପାଟିକା ମରାମତି ପାଇଁ ଏକ ନୂତନ ନକ୍ସାର ପ୍ରଚଳନ ମଧ୍ୟ ତାଙ୍କଦ୍ୱାରା ସମ୍ଭବ ହେଲା। ଏହାଛଡ଼ା ହୃଦଯନ୍ତ୍ର ପ୍ରତିରୋପଣ ଦିଗରେ ସେ କୁକୁର ମାନଙ୍କ ଉପରେ ବିଭିନ୍ନ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଦେଲେ।

୧୯୬୭ ମସିହା ଡିସେମ୍ବର ମାସରେ ଅନ୍ୟ ୨୦ ଜଣ ଡାକ୍ତରଙ୍କୁ ଧରି ସେ ପ୍ରଥମଥର ପାଇଁ ମଣିଷ ଦେହରେ ହୃଦଯନ୍ତ୍ର ପ୍ରତିରୋପଣ ଅସ୍ତ୍ରୋପଚାର କରିଥିଲେ। ତାଙ୍କ ଦ୍ୱାରା ହୋଇଥିବା ପ୍ରଥମ ପ୍ରତିରୋପିତ ବ୍ୟକ୍ତିର ନାମ ଲୁଇ ୱାସ୍କନସ୍କି। ସେ ଦକ୍ଷିଣ ଆଫ୍ରିକାର ଜଣେ ଦୋକାନୀ। ଅନେକ ଦିନ ଧରି ସେ ଏକ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ଥିଲେ। ଏକ ସଡ଼କ ଦୁର୍ଘଟଣାରେ ସାଂଘାତିକ କ୍ଷତାକ୍ତ ବ୍ୟକ୍ତିର ହୃଦଯନ୍ତ୍ରକୁ ନେଇ ସେ ୱାସ୍କାନିସ୍କିଠାରେ ପ୍ରତିରୋପଣ କରିଥିଲେ। ତାଙ୍କର ଅସ୍ତ୍ରୋପଚାର ସଫଳ ହେଲା। ସାରା ବିଶ୍ୱରେ ନୂତନ ଆଶାର ସଂଚାର ହେଲା। କୋଣ ଅନୁକୋଣରୁ ପ୍ରଶଂସାର ବାର୍ତ୍ତା ଛୁଟିଲା ବେନାର୍ଡ଼ଙ୍କ ପାଦତଳକୁ। କିନ୍ତୁ ଅସ୍ତ୍ରୋପଚାର ର ମାତ୍ର ୧୮ ଦିନପରେ ୱାସ୍କାନ୍‌ସ୍କି ମୃତ୍ୟୁମୁଖରେ ପଡ଼ିଲା। ଶରୀରର ପ୍ରତିରୋଧକ ଶକ୍ତିକୁ ଚପାଇ ରଖିବାପାଇଁ ଦିଆଯାଉଥିବା ବିଭିନ୍ନ ଔଷଧର ପ୍ରଭାବରେ ରୋଗୀକୁ ନିମୋନିଆ କବଳିତ କଲା। ଅସ୍ତ୍ରୋପଚାର ପୂର୍ବରୁ ଏହି ଆଶଙ୍କା ଚିକିତ୍ସକ ମାନଙ୍କ ମନରେ ଥିଲେ ବି ପ୍ରଥମ ପ୍ରଚେଷ୍ଟାର ଆପେକ୍ଷିକ ଅସଫଳତାରେ ସମସ୍ତେ ମର୍ମାହତ ହେଲେ।

ଅଳ୍ପଦିନ ପରେ ବେନାର୍ଡ଼ ପୁଣିଥରେ ତାଙ୍କ ସାଧନାପଥରେ ଆଗେଇବା ପାଇଁ ବଦ୍ଧ ପରିକର ହେଲେ। ଧୀରେ ଧୀରେ ରୋଗୀମାନେ ଅଧିକରୁ ଅଧିକ ସମୟ ବଞ୍ଚି ପାରିଲେ। ୧୯୭୦ ମସିହାବେଳକୁ ତାଙ୍କର ଅଧିକାଂଶ ରୋଗୀ ଏକ ବର୍ଷରୁ ୮ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ଜୀବନ ଯାପନ କରିପାରିଲେ।

ବେନାର୍ଡ଼ ୧୯୮୩ ମସିହା ପର୍ଯ୍ୟନ୍ତ ଗ୍ରୁଟ୍ ସର ହସ୍ପିଟାଲର ହୃଦ-ବିଭାଗ-ମୁଖ୍ୟଭାବେ କାର୍ଯ୍ୟରତ୍ ଥିଲେ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ ଦୈନିକ ପ୍ରାୟ ୧୮ ଘଣ୍ଟାରୁ ୨୦ ଘଣ୍ଟା ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଗବେଷଣାଗାର ମଧ୍ୟରେ ହେଉ ବା ଅସ୍ତ୍ରୋପଚାରଶାଳାରେ ହେଉ ସେ ଥିଲାବେଳେ ଦିନରାତି ଭୋକ ଶୋଷ କିଛି ଜଣା ପଡୁନଥିଲା । ଅନ୍ୟର ଶରୀର ପାଇଁ ସଦା ଚିନ୍ତିତ ଏହି ଯୁଗ ପୁରୁଷ କିନ୍ତୁ ନିଜ ଶରୀର ପ୍ରତି ଅନେକ ଅବହେଳା କରିସାରିଥିଲେ । ତାଙ୍କୁ ଯେତେବେଳେ ୫୫ ବର୍ଷ ସେତେବେଳୁ ସେ ତାଙ୍କର ହାତ ଆଙ୍ଗୁଠିରେ କିଛି କିଛି ବ୍ୟଥା ଅନୁଭବ କରୁଥିଲେ । କିନ୍ତୁ ସେ ସବୁକୁ ଖାତିରନକରି ଦିନରାତି ନିଜ ଗବେଷଣାରେ ମଜ୍ଜି ରହିଥିଲେ । ଶେଷରେ ରୋଗ ବିରୁଦ୍ଧରେ ସାରାଜୀବନ ଲଢ଼ିଥିବା ଏହି ଦୁଃସାହସୀ ଜେନେରାଲ୍‌ଙ୍କୁ ଗଣ୍ଠିବାତ ରୋଗ କାବୁ କରିନେଲା । ଅସ୍ତ୍ରୋପଚାର ପାଇଁ ଆଙ୍ଗୁଠିରେ ଯେଉଁ ନମନୀୟତା ରହିବା କଥା ତାହା ରହିଲା ନାହିଁ । ତାଙ୍କର ଅମୂଲ୍ୟ ଆଙ୍ଗୁଠି ଗୁଡ଼ିକ ଆପାତତଃ ତାଙ୍କପାଇଁ ଅର୍କମଣ୍ୟ ଜଣା ପଡ଼ିଲେ । ଶେଷରେ ୧୯୮୩ ମସିହାରେ ସେ ସ୍ୱେଚ୍ଛାକୃତ ଭାବେ ଅବସର ଗ୍ରହଣ କଲେ ।

ତାଙ୍କଦ୍ୱାରା ପ୍ରଥମେ ଉଦ୍ଭାବିତ ହୃଦଯନ୍ତ୍ର ପ୍ରତିରୋପଣ ଅସ୍ତ୍ରୋପଚାର ବର୍ତ୍ତମାନ ବିଶ୍ୱକୁ ଆଶାର ଆଲୋକ ଦେଖାଉଛି । ସେହି ଆଲୋକ ଭବିଷ୍ୟତ ବର୍ଷ ମାନଙ୍କରେ ମଣିଷକୁ ଆହୁରି ଅନେକ ନୂତନ ରାସ୍ତାର ସନ୍ଧାନ ଦେବ ଏହା ନିଃସନ୍ଦେହ ।





**ଡାକ୍ତର ରବିନାରାୟଣ ରଥ**

*ଏମ୍.ବି.ବି.ଏସ୍., ପି.ଏଚ୍.ଡ଼ି. (ମେଡ଼ିସିନ୍-ଉତ୍କଳ) ଡି.ଏମ୍.ସି.ଏଚ୍, ଡି.ପି.ପି.ଏଚ୍*

*ଡାକ୍ତର ରଥ ଏକାଧାରରେ ନାଟ୍ୟକାର, କବି, ବିଜ୍ଞାନ ଓ ଶିଶୁ ସାହିତ୍ୟ ଲେଖକ ତଥା ଜନ-ସ୍ୱାସ୍ଥ୍ୟ ବିଶାରଦ । ଏ ପର୍ଯ୍ୟନ୍ତ ଓଡ଼ିଆ, ଇଂରାଜୀ ଓ ହିନ୍ଦୀ ଭାଷାରେ ଭାରତ ଓ ବିଦେଶର ବିଭିନ୍ନ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ପ୍ରାୟ ତିନିଶହରୁ ଅଧିକ ଜନସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଲେଖା ପ୍ରକାଶିତ ଓ ଦୂରଦର୍ଶନ ଓ ଆକାଶବାଣୀରେ ଜନସ୍ୱାସ୍ଥ୍ୟ ସମସ୍ୟା ଉପରେ ନିୟମିତ ନିଷ୍ଠାପର ଆଲୋଚକ ।*

*ଜନ୍ମ - ୧୯୪୬ ମସିହା*

*ଅଧୁନା କେନ୍ଦ୍ରୀୟ ସ୍ୱାସ୍ଥ୍ୟ ସେବାରେ ଚୟନଶ୍ରେଣୀ ଅଧିକାରୀ ଭାବେ କାର୍ଯ୍ୟରତ ।*

ଅଦ୍ୟାବଧି ଅନେକ ଯୁଗାନ୍ତକାରୀ ଉଦ୍ଭାବନ ମାଧ୍ୟମରେ ମଣିଷ 'ଜୀବନ' ସୁସ୍ଥ ଓ ସୁଖଦ ହୋଇପାରିଛି । 'ଜୀବନ'ର ଚଲାପଥର ବିଭିନ୍ନ ମୋଡ଼ରେ ଆଲୋକ ଦେଖାଇ ଜୀବନକୁ ଦୁର୍ଘଟଣାମୁକ୍ତ କରିଛନ୍ତି ଅନେକ କିମ୍ବଦନ୍ତୀ ନାରୀ ଓ ପୁରୁଷ । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀର ଚରକ, ସୁଶ୍ରୁତ ଓ ପରେ ହିପୋକ୍ରେଟିସ୍ ପ୍ରଥମେ ଆୟୁର୍ବିଜ୍ଞାନର ପ୍ରଣୟନ ତଥା ଅଭ୍ୟାସ କରି ନୂତନ ଯୁଗ ସୃଷ୍ଟି କରିଛନ୍ତି । ପରବର୍ତ୍ତୀ କାଳରେ ଭେସାଲିଅସ୍ ଶରୀର ରଚନା ବିଜ୍ଞାନ ପ୍ରଣୟନ ଏବଂ ହାର୍ଭେ ରକ୍ତ ସଂଚାଳନ ଆଦି ଶାରୀରିକ କ୍ରିୟା ବିଷୟରେ ସଠିକ୍ ତଥ୍ୟ ଲିପିବଦ୍ଧ କରନ୍ତି । ରୋଗ ପ୍ରତିଷେଧକ ବିଜ୍ଞାନର ପ୍ରଥମ ସୂତ୍ର ଯୋଗାନ୍ତି ଏଡ଼ୱାର୍ଡ଼ ଜେନର୍ । ରୋଗ ପ୍ରତିରୋଧକ ଶକ୍ତିକୁ ଜାଗ୍ରତ କରାଇ ସାଦୃଶ-ଚିକିତ୍ସାର ପ୍ରବର୍ତ୍ତନ କରନ୍ତି ହାନିମାନ୍ । ଅନୁବଂଶ ବିଜ୍ଞାନ ଧାରାର ଭଗୀରଥ ସାଜିଛନ୍ତି ମେଣ୍ଡେଲ୍ । ପ୍ରଥମେ ଜୀବାଣୁ ତତ୍ତ୍ୱ ବିଷୟରେ ଆଲୋକ ପ୍ରଦାନ କରନ୍ତି ପାଶ୍ଚର । କୁଷ୍ଠରୋଗକୁ ଜୀବାଣୁ ସମ୍ଭୂତ ବୋଲି ପ୍ରତିପାଦନ କରନ୍ତି ହାନ୍‌ସେନ୍ । ରଞ୍ଜନ୍‌ଙ୍କ ଉଦ୍ଭାବିତ ରଶ୍ମି ଶରୀର ଅଭ୍ୟନ୍ତରର ଦୃଶ୍ୟ ଯୋଗାଏ । ରୋନାଲ୍ଡ଼ ରସଙ୍କ ଆବିଷ୍କାର ଏନୋଫିଲିସ୍ ମଶାର ମୁଖା ଖୋଲେ । ଫ୍ଲେମିଙ୍ଗ୍‌ଙ୍କ ପେନ୍‌ସିଲିନ୍ ପ୍ରତିଜୀବୀ-ଯୁଗର ସୂତ୍ରପାତ କରେ । ଖୁରାନାଙ୍କ ଗବେଷଣା ଜୈବ ପ୍ରଯୁକ୍ତି ବିଦ୍ୟା ପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ଖ୍ରୀଷ୍ଟିଆନ୍ ବେର୍ନାର୍ଡ଼ଙ୍କ ହୃତପିଣ୍ଡ-ପ୍ରତିରୋପଣ 'ଜୀବନ' ଆକାଶକୁ ନୂତନ ଆଭାରେ ଉଦ୍‌ଭାସିତ କରେ -

'ଜୀବନର ଜୀବନୀ'- ଏଭଳି ଅନେକ କଲ୍ୟାଣକାରୀ ଉଦ୍ଭାବନର ଏକ ସଫଳ ସଂକ୍ଷିପ୍ତ ସଂକଳନ । ହୁଏତ ମାନବ 'ଜୀବନ'ର ଏକ ଅମୂଲ୍ୟ ଡାଏରୀ...